# ଚନ୍ଦ୍ର ବିଜୟୀ

ଗୀତା ପତି



ଚିତ୍ରାଙ୍କନ
ଗ୍ୟାରୀ ଲି. ଗୁଷ୍ଟାଫ୍‌ସନ୍




ଲାର୍କ ବୁକ୍‌ସ

# ଚନ୍ଦ୍ର ବିଜୟୀ

ଲେଖିକା - ଗୀତା ପତି
ଅଙ୍କନ - ଗ୍ୟାରୀ ଲି ଗୁଷ୍ଟାଫ୍‌ସନ୍
ଅଙ୍ଗସଜ୍ଜା - ବିପିନ ଦାଶ
ପ୍ରକାଶକ - ଲାର୍କ ବୁକ୍‌ସ, ଭୁବନେଶ୍ୱର

ମୂଲ୍ୟ ପଚିଶ ଟଙ୍କା ମାତ୍ର

## CHANDRA BIJAYEE

Written by
**Geeta Pati**

Drawn by
**Garry Lee Gustafson**

Design
**Bipin Dash**

Published by
**LARK BOOKS**

Subarnarekha Chambers
Bhauma Nagar
Bhubaneswar-751001

Printed at
TARA ART PRESS, NEW DELHI

Rs.25.00

ISBN - 81 - 7375 - 002 - 5

# ଉତ୍ସର୍ଗ

ସ୍ନେହ, ଶ୍ରଦ୍ଧା, ଦୟା ଓ ସହିଷ୍ଣୁତାର ଜୀବନ୍ତ ପ୍ରତିମୂର୍ତ୍ତୀ ମୋ ମା,
ଶ୍ରୀମତୀ ଉମା ଦାଶଙ୍କର କରକମଳରେ ବହିଟି ଅର୍ପଣ କଲି ।

ଲିଲି

# କୃତଜ୍ଞତା

ବହିଟିକୁ ପାଠକରି ତାହାର ବିଜ୍ଞାନ ବିଷୟବସ୍ତୁ (scientific facts) ଗୁଡ଼ିକ ସଂଶୋଧନ କରି ମତାମତ ପ୍ରକାଶ କରି ସହାୟତା କରିଥିବା ଅଧ୍ୟାପକ ୱେନ୍‌ସେଲ୍ (Professor Wentzel) ଓ ଅଧ୍ୟାପକ ଯୋଗେଶ ପତି (Professor Jogesh Pati)ଙ୍କ ପାଖରେ ମୁଁ ଚିର ଋଣୀ।

ପୂର୍ଣ୍ଣ ବହିଟିକୁ ପାଠ କରି ରଚନାର ଭାଷା ଓ ଶୈଳୀକୁ କେତେକାଂଶରେ ସଂଶୋଧନ କରି ପରିମାର୍ଜିତ କରିବା ଦିଗରେ ସାହାଯ୍ୟ କରିଥିବା ଲେଖକ ଓ ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କୁ ବହୁ ଧନ୍ୟବାଦ।

ଗୀତା ପତି

# ମୁଖବନ୍ଧ

ଶିଶୁସାହିତ୍ୟ ଶିଶୁଶିକ୍ଷାର ଏକ ଅବିଚ୍ଛେଦ୍ୟ ଅଙ୍ଗ। ଶିଶୁସାହିତ୍ୟ ମାଧ୍ୟମରେ, ବିଭିନ୍ନ ବିଷୟବସ୍ତୁ ପରିବେଷଣ କରାଗଲେ କୋମଳମତି ବାଳକ ବାଳିକାମାନଙ୍କର ଜ୍ଞାନର ପରିସର ବୃଦ୍ଧିହେବା ସହ ସେମାନଙ୍କର ଚିନ୍ତାଧାରା ଓ ଦୃଷ୍ଟିକୋଣ ମଧ୍ୟ ପରିବର୍ତ୍ତିତ ହୋଇଥାଏ। ଫଳରେ ସମାଜ ଓ ଦେଶର ଉନ୍ନତିର ଦ୍ୱାର ଖୋଲିଥାଏ। କାରଣ, 'ଆଜିର ଶିଶୁ, କାଲିର ନାଗରିକ'।

ବର୍ତ୍ତମାନ ଏ ବିଜ୍ଞାନ ଯୁଗରେ ଦେଶର ବାଳକବାଳିକାମାନଙ୍କୁ ବିଜ୍ଞାନଶିକ୍ଷା ଦେବାପାଇଁ ଶିଶୁସାହିତ୍ୟ ମାଧ୍ୟମରେ ବିଜ୍ଞାନ ସମ୍ବନ୍ଧୀୟ ବିଷୟବସ୍ତୁଗୁଡ଼ିକ ପରିବେଷଣ କରିବା ଏକାନ୍ତ ଆବଶ୍ୟକ। କାରଣ ବିଜ୍ଞାନର ବିକାଶରେ ସମାଜ ଓ ଦେଶର ଉନ୍ନତି ଅବଶ୍ୟମ୍ଭାବୀ। ଏହାର ଜ୍ୱଳନ୍ତ ଉଦାହରଣ, ଆମ୍ଭେମାନେ ପ୍ରଗତିଶୀଳ ପାଶ୍ଚାତ୍ୟ ଦେଶ ଗୁଡ଼ିକରୁ ଦେଖିବାକୁ ପାଉଁ। କିନ୍ତୁ ବିଜ୍ଞାନ ବିଷୟକ ତଥ୍ୟ ନିରାଟ ସତ୍ୟ ହେଲେ ମଧ୍ୟ, ତାହା ପ୍ରତି ସ୍ୱତଃପ୍ରବୃତ୍ତ ଭାବେ ଆକୃଷ୍ଟ ହୋଇ ପାଠକରିବା ଅଧିକାଂଶ ବାଳକବାଳିକାଙ୍କ ପକ୍ଷେ ସ୍ୱାଭାବିକ ନୁହେଁ। କାରଣ ତାହା ସେମାନଙ୍କୁ ନିରସ ଓ ବିରକ୍ତିକର ମନେ ହୁଏ। ଅପରପକ୍ଷରେ ଗଳ୍ପ କିମ୍ବା କାହାଣୀ ପାଠ କରିବାକୁ, ବାଳକବାଳିକାଗଣ ସଦା ଉତ୍ସୁକ। ସେହି ଦୃଷ୍ଟିରୁ ଏ ବହିଟିରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ ବିଷୟବସ୍ତୁ ଗୁଡ଼ିକ ଗଳ୍ପ ମାଧ୍ୟମରେ ପରିବେଷିତ ହୋଇଛି। ଫଳରେ ବାଳକବାଳିକାବୃନ୍ଦ ଏ ବହିଟିକୁ ଗଳ୍ପବହି ରୂପେ ଆଗ୍ରହ ପ୍ରକାଶ କରି ପାଠ କରିବା ଦ୍ୱାରା, ବିଜ୍ଞାନ ସମ୍ବନ୍ଧୀୟ ସତ୍ୟ ଗୁଡ଼ିକ ମଧ୍ୟ ହୃଦୟଙ୍ଗମ କରିବେ। ବହିଟି ସରଳ ଭାଷାରେ ରଚିତ ଓ ରଙ୍ଗୀନ୍ ଚିତ୍ରମୟ। ତେଣୁ ଏହା ବାଳକବାଳିକାମାନଙ୍କର ମନୋରଞ୍ଜନ କରିବା ସହ ବୋଧଗମ୍ୟ ମଧ୍ୟ ହେବ।

ବହିଟିରେ ପଶୁପକ୍ଷୀଙ୍କ ଚନ୍ଦ୍ରାଭିଯାନ ମାଧ୍ୟମରେ-୧୯୬୯ ଆପୋଲ-୧୧ ର (Apollo-11) ବ୍ୟୋମଚାରୀ ନିଲ ଆର୍ମଷ୍ଟ୍ରଙ୍ଗ, ମାଇକେଲ୍ କଲିନ୍ସ ଓ ଏଡ୍‌ୱିନ୍ ଆଲଡ୍ରିନ୍‌ଙ୍କ ସର୍ବ ପ୍ରଥମ ଚନ୍ଦ୍ରଯାତ୍ରା ଓ ଚନ୍ଦ୍ର ପୃଷ୍ଠରେ ସେମାନଙ୍କର କାର୍ଯ୍ୟକଳାପର ଏକ ସଂକ୍ଷିପ୍ତ ବିବରଣୀ ଦିଆଯାଇଛି।

ଏଥିରେ ତିନିଜଣ ଅଜ୍ଞ ପଶୁପକ୍ଷୀ -- ଯଥା ଠେକୁଆ, ମାଛ ଓ କାଉ, ସେମାନଙ୍କର ପରାମର୍ଶଦାତା ଏକ ଜ୍ଞାନୀ ପେଚାଙ୍କ ସହ ଚନ୍ଦ୍ରପୃଷ୍ଠକୁ ଯାତ୍ରା କରିଥିଲେ। ସେଠି ନିଜର କାର୍ଯ୍ୟକଳାପ ଓ ଜ୍ଞାନୀ ପେଚାଙ୍କ ସହ କଥୋପକଥନ ଦ୍ୱାରା, ଚନ୍ଦ୍ର ସମ୍ବନ୍ଧୀୟ ବହୁ ବିଜ୍ଞାନତଥ୍ୟ ସମୂହର ସତ୍ୟତା ହୃଦୟଙ୍ଗମ କରିବାକୁ ସକ୍ଷମ ହୋଇ ପାରିଥିଲେ।

ଗଳ୍ପ ମାଧ୍ୟମରେ, ବିଜ୍ଞାନ ପରିବେଷଣର ଏ କ୍ଷୁଦ୍ର ପ୍ରୟାସ ସମୁଦ୍ରକୁ ଶଂଖେ ପାଣିପରି ମନେ ହୋଇପାରେ। କିନ୍ତୁ, ବିନ୍ଦୁ ବିନ୍ଦୁ ଜଳର ସଂଯୋଗରେ ମହାସମୁଦ୍ରର ସୃଷ୍ଟି ସମ୍ଭବପର ହୋଇଛି। ଦେଶର ବାଳକବାଳିକାଗଣ ଏ 'ଚନ୍ଦ୍ର ବିଜୟୀ' ବହିଟି ପାଠ କଲେ, ଚନ୍ଦ୍ର ସମ୍ବନ୍ଧରେ ବହୁ ଜ୍ଞାନ ଅର୍ଜନ କରିବା ସହ ମହାକାଶ ଯାତ୍ରା, ଆମ ସୌରଜଗତ ଓ ଏ ମହାବିଶ୍ୱର ଅନ୍ୟାନ୍ୟ ଗ୍ରହ ଓ ନକ୍ଷତ୍ର ପୁଞ୍ଜ (Galaxy) ଇତ୍ୟାଦି ବିଷୟରେ ଏକ ମୋଟାମୋଟି ଧାରଣା କରି ପାରିବେ।

ଶିଶୁର ଲାଳନ ପାଳନ କରି, ତାକୁ ଶିକ୍ଷା ପ୍ରତି ଆଗ୍ରହୀ କରିବା ପିତାମାତାଙ୍କର ଯେପରି କର୍ତ୍ତବ୍ୟ, ଶିଶୁକୁ ଉପଯୁକ୍ତ ଶିକ୍ଷାର ସୁବିଧା ଓ ସୁଯୋଗ ପ୍ରଦାନ କରିବା ଦିଗରେ ସରକାରଙ୍କର ମଧ୍ୟ ସେହିପରି ପୂର୍ଣ୍ଣ ଦାୟିତ୍ୱ ରହିଛି। ତେଣୁ ଦେଶର ଜନସାଧାରଣ ଓ ସରକାର ଏ ବହିଟିର ସଦୁପଯୋଗ କରି ଦେଶର ବାଳକବାଳିକାମାନଙ୍କୁ ବିଜ୍ଞାନ ପଥରେ ଅଗ୍ରସର କରାଇବା ଦିଗରେ ପୂର୍ଣ୍ଣ ସହଯୋଗ କରିବେ ବୋଲି ମୋର ଦୃଢ଼ ବିଶ୍ୱାସ।

**ଗୀତା ପତି**

# ପ୍ରଥମ ପରିଚ୍ଛେଦ

ଘନ ଜଙ୍ଗଲ ଭିତରେ ଦିନେ ପଶୁପକ୍ଷୀମାନଙ୍କର ସଭା ବସିଲା। ପୂର୍ଣ୍ଣମୀ ରାତି ହୋଇଥାଏ। ଜଙ୍ଗଲ ମଝିରେ ଏକ ଖୋଲା ଘାସ ପଡ଼ିଆ। ସେଠି ଏକ ଉଚ୍ଚ ଘାସକୁଦ ଉପରେ ସଭାପତି ପଦରେ ଛିଡ଼ା ହୋଇ ରହିଥିଲେ ସିଂହରାଜ ବଳବୀର। ଜାଗାଟି ପଶୁପକ୍ଷୀଙ୍କ ସମାଗମରେ ପୂରି ଉଠିଥିଲା। ସେମାନଙ୍କର କୋଳାହଳରେ ରାତିର ଆକାଶ ମୁଖରିତ ହୋଇ ଉଠିଥିଲା। ସଭାରେ ଯୋଗଦେବା ପାଇଁ ଦେଶ ବିଦେଶରୁ ନିମନ୍ତ୍ରିତ ହୋଇ ପଶୁପକ୍ଷୀମାନଙ୍କର ପ୍ରତିନିଧିମାନେ ଆସିଥିଲେ। ଆଫ୍ରିକା ମହାଦେଶରୁ ଆସିଥିଲା ଜିରାଫ୍, ଅଷ୍ଟ୍ରେଲିଆ ମହାଦେଶରୁ ଆସିଥିଲା କଙ୍ଗାରୁ, ଏସିଆ ମହାଦେଶର ଚୀନ୍‌ରୁ ଆସିଥିଲା ପାଣ୍ଡାଭାଲୁ ଓ ଭାରତବର୍ଷରୁ ଆସିଥିଲା ମହାବଳ ବାଘ। ଇଉରୋପ୍‌ରୁ ହେଟାବାଘ ଓ ମେରୁ ଅଞ୍ଚଳରୁ ଧଳାଭାଲୁ ମଧ୍ୟ ଆସିଥିଲା। ଏ ସମସ୍ତ ନିମନ୍ତ୍ରିତ ପ୍ରତିନିଧିଗଣ ନିଜ ନିଜ ସ୍ଥାନରେ ସ୍ଥିର ଓ ଗମ୍ଭୀର ହୋଇ ବସି ରହିଥିଲେ। ଏ ସଭା ପୃଥିବୀର ଜଳ, ସ୍ଥଳ ଓ ନଭଶ୍ଚର ପଶୁପକ୍ଷୀଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା।

ସଭାପତି ସିଂହରାଜ ଚାରିଆଡ଼କୁ ଦୃଷ୍ଟି ପକାଇ, ନିଜର ଘଞ୍ଚ ଦାଢ଼ିଗୁଡ଼ିକ ଉପରେ ହାତ ବୁଲାଇ ଆଣି ଗଳା ଝାଡ଼ି ଖୁବ୍ ଉଚ୍ଚ ଗର୍ଜନ କରି ଆରମ୍ଭ କଲେ।

''କଥାବାର୍ତ୍ତା ବନ୍ଦ କରନ୍ତୁ.......''

' ସିଂହରାଜଙ୍କର ଉଚ୍ଚଗର୍ଜନ ଶୁଣି ସମସ୍ତେ ଚୁପ୍ ହୋଇଗଲେ।

''ବର୍ତ୍ତମାନ ଆମ ପଶୁପକ୍ଷୀ ସମାଜ ଏକ କଠିଣ ସମସ୍ୟାର ସମ୍ମୁଖୀନ ହୋଇଛି।'' ସିଂହରାଜ ବଳବୀର ଆରମ୍ଭ କଲେ, ''ଆମ୍ଭମାନଙ୍କର ଗୁପ୍ତଚର ଛଞ୍ଚାଣ ଦୂରଦର୍ଶୀ ମହାଶୟଙ୍କର ବିବୃତି ଅନୁଯାୟୀ, ଆମେରିକା ମହାଦେଶର ଫ୍ଲୋରିଡ଼ା ନାମକ ଏକ ସମୁଦ୍ରକୂଳବର୍ତ୍ତୀ ଜାଗାରେ, କେପ୍‌କେନେଡ଼ି (Cape Kennedy) ନାମକ ଏକ ଅନ୍ତରୀପ ଅଛି। ସେହି ଅନ୍ତରୀପରେ ମାନବସମାଜ ନିର୍ମିତ ନାସା (NASA) (National Aeronautics and Space Administration) ନାମକ ଏକ ଅନୁଷ୍ଠାନ ଅଛି। ସେଠି ମାନବ, ମହାକାଶସ୍ଥ ଗ୍ରହନକ୍ଷତ୍ର ଇତ୍ୟାଦି ଉପରେ ବିଶେଷ ଜ୍ଞାନ ଅର୍ଜନ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଗବେଷଣା କରନ୍ତି। ବର୍ତ୍ତମାନ ମାନବ ସେହି ସ୍ଥାନରୁ, ନିଜର ବୁଦ୍ଧି ଓ ଚେଷ୍ଟା ଦ୍ୱାରା ଚନ୍ଦ୍ର ପୃଷ୍ଠରେ ପଦକ୍ଷେପ କରିବାର ସମସ୍ତ ଆୟୋଜନ କରିସାରିଲାଣି। ଆପଣମାନଙ୍କୁ ନିଶ୍ଚୟ ଜଣାଥିବ ଯେ କେତେବର୍ଷ ତଳେ ମହାକାଶ ଭ୍ରମଣର ପ୍ରଥମ ଚେଷ୍ଟାରେ ମାନବ ଋଷିଆରୁ ଆମ ପଶୁପକ୍ଷୀ ସମାଜରୁ କୁକୁର ଭଉଣୀ ଲାଇକାଙ୍କୁ ପ୍ରଥମ ବ୍ୟୋମଚାରୀ ରୂପେ ମହାକାଶକୁ ପଠାଇଥିଲେ। ପରେ ଆମେରିକାରୁ, ଶିମ୍ପାଞ୍ଜି ଭଉଣୀ ହାମ୍‌ଙ୍କୁ ଦ୍ୱିତୀୟ ବ୍ୟୋମଚାରୀ ରୂପେ ପଠାଇଥିଲେ। ଫଳରେ, ମାନବର ସେହି ଆଦି ଚେଷ୍ଟାର ସଫଳତାର ଭାଗୀଦାର ଆମ ପଶୁପକ୍ଷୀ ସମାଜ ମଧ୍ୟ ହୋଇଥିଲା। କିନ୍ତୁ ବର୍ତ୍ତମାନ ମାନବ ଆମ ପଶୁପକ୍ଷୀଗଣଙ୍କୁ ଉପେକ୍ଷା କରି, ନିଜେ ଚନ୍ଦ୍ର ପୃଷ୍ଠରେ ପ୍ରଥମେ

ପଦକ୍ଷେପ କରିବାକୁ ପ୍ରସ୍ତୁତ ହୋଇଯାଇଛି। ମାନବ ପ୍ରଥମ ଚନ୍ଦ୍ର ବିଜୟୀ ହୋଇ ନିଜ ସମାଜର ଜ୍ଞାନ ଓ ବୁଦ୍ଧିର ଜୟପତାକା ଉଡ଼ାଇ ଆସିବ। ମୋ ମତରେ, ଏହା ଘୋର ଅନ୍ୟାୟ। ଉପରକୁ ଚାହିଁ ଦେଖନ୍ତୁ'', ସିଂହରାଜ ବଳବୀର ଆକାଶର ପୂର୍ଣ୍ଣଚନ୍ଦ୍ରଙ୍କ ଆଡ଼କୁ ହାତ ଦେଖାଇ କହିଲେ, '' ଏ ଚନ୍ଦ୍ର କେବଳ ମାନବ ପାଇଁ ନୁହେଁ, ଏହା ଆମ୍ଭମାନଙ୍କର ମଧ। ଚାନ୍ଦିନୀ ରାତିରେ ମାନବ ଯେତେବେଳେ ଗଭୀର ନିଦ୍ରାରେ ଅଚେତନ ହୋଇଥାଏ, ଏ ଚନ୍ଦ୍ର ତାର ଉଜ୍ଜ୍ୱଳ ଆଲୋକ ଦ୍ୱାରା ଆମ ନିଶାଚର ଜୀବଜନ୍ତୁଙ୍କର ଚଳପ୍ରଚଳର ପଥ ଆଲୋକିତ କରି, ସେମାନଙ୍କର ଜୀବନ ଯାତ୍ରା ସହଜ ଓ ସୁଗମ କରିଥାଏ। ତେଣୁ ମୋ ମତରେ, ଚନ୍ଦ୍ରକୁ ଯାତ୍ରା କରିବାର ଅଧିକାର ମାନବ ସମାଜ ଭଳି ଆମ ପଶୁପକ୍ଷୀମାନଙ୍କର ମଧ ଅଛି। ମାନବ ଯଦି ପ୍ରଥମେ ଚନ୍ଦ୍ର ବିଜୟୀ ହୁଏ ଆମ ପଶୁପକ୍ଷୀ ସମାଜ ପାଇଁ ଏହାଠାରୁ ବଳି ପରାଜୟ ଓ ଅପମାନର ବିଷୟ ଆଉ ଅଧିକ କିଛି ଥାଇପାରେ ବୋଲି ମୋର ମନେ ହୁଏ ନାହିଁ। ତେଣୁ ଭାଇ ଓ ଭଉଣୀମାନେ, ଆପଣ ସମସ୍ତେ ବିଚାର କରି ସ୍ଥିର କରନ୍ତୁ କି ପ୍ରଥମ ଚନ୍ଦ୍ର ବିଜୟୀ ମନୁଷ୍ୟ ହେବ ନା ପଶୁପକ୍ଷୀ ହେବେ ?'' ସିଂହରାଜ ବଳବୀର କିଛିକ୍ଷଣ ପାଇଁ ନୀରବ ହୋଇ ପଶୁପକ୍ଷୀଙ୍କ ମତାମତକୁ ଅପେକ୍ଷା କରି ରହିଲେ।

''ପ୍ରଥମ ଚନ୍ଦ୍ର ବିଜୟୀ ଆମେ ପଶୁପକ୍ଷୀ ହେବୁ।.......ମାନବ ନୁହେଁ!! ମାନବ ନୁହେଁ!!'' ଚତୁର୍ଦ୍ଦିଗରୁ, ପଶୁପକ୍ଷୀଙ୍କ ଉତ୍ତେଜିତ କଣ୍ଠର ସମ୍ମିଳିତ ଧ୍ୱନୀ ଶୁଣାଗଲା।

''ସାବାସ୍ !!........'' ସିଂହରାଜ ବଳବୀର ପ୍ରଫୁଲ୍ଲିତ ସ୍ୱରରେ କହି ଉଠିଲେ। ''ଆପଣମାନଙ୍କର ବିଚାର ଅତି ଉତ୍ତମ।'' ତେବେ ଆପଣମାନେ ଏହି ଚନ୍ଦ୍ର ବିଜୟୀ ପ୍ରତିଯୋଗୀତାରେ ମନପ୍ରାଣ ଦେଇ ସହାୟତା କରିବେ ବୋଲି ମୋର ଆଶା ଓ ଅନୁରୋଧ।''

ସଭାପତି ସିଂହରାଜଙ୍କର ଭାଷଣ ଶେଷ ହେଲା। ଘନ ଘନ କରତାଳି ଓ ସିଟି ଶବ୍ଦରେ, ବନସ୍ଥଳି କମ୍ପି ଉଠିଲା। ଚତୁର ବିଲୁଆ, ବିକ୍ରମ ମହାଶୟଙ୍କୁ ମହାକାଶଚାରୀ ବାଛିବାର ଭାର ଦିଆଗଲା। ମହାକାଶଚାରୀ ପଦ ପ୍ରାର୍ଥୀ ଶହ ଶହ ପଶୁପକ୍ଷୀ ଆଗେଇ ଆସିଲେ। ସମସ୍ତଙ୍କ ମୁହଁରେ ଗୋଟିଏ କଥା।

''ମୁଁ ଚନ୍ଦ୍ରକୁ ଯିବି........ମୁଁ ଚନ୍ଦ୍ରକୁ ଯିବି......''

ସମୟ ଓ ବାକ୍ୟ ନଷ୍ଟ ନ କରି, ବିଲୁଆ ବିକ୍ରମ ମହାଶୟ, ମହାକାଶଚାରୀ ବା ବ୍ୟୋମଚାରୀ ବାଛିବା ପାଇଁ ଏକ ଉପାୟ ସ୍ଥିର କଲେ। ପ୍ରଥମେ ସେ ବ୍ୟୋମଚାରୀ ପଦ ପ୍ରାର୍ଥୀ ପଶୁପକ୍ଷୀଙ୍କୁ ପ୍ରଶ୍ନ ପଚାରି ସେମାନଙ୍କର ଶୌର୍ଯ୍ୟ, ବୀର୍ଯ୍ୟ ଓ ଅସାଧାରଣ କାର୍ଯ୍ୟକଳାପ ଗୁଡ଼ିକର ବିବରଣୀ ସଂଗ୍ରହ କରିଦେଲେ। ତାପରେ, ସମସ୍ତ ଜୀବଜନ୍ତୁଙ୍କର ଉପସ୍ଥିତିରେ, ବିଭିନ୍ନ ଉପାୟ ଅବଲମ୍ବନ କରି ବ୍ୟୋମଚାରୀ ପଦ ପ୍ରାର୍ଥୀ ପଶୁପକ୍ଷୀମାନଙ୍କର ଶକ୍ତି ସାମର୍ଥ୍ୟ ପରୀକ୍ଷା କରି ଦେଖିଦେଲେ। ଏହି ପ୍ରଣାଳୀ କ୍ରମେ, ବିଲୁଆ ବିକ୍ରମ ମହାଶୟ ତିନିଜଣ ପଶୁପକ୍ଷୀଙ୍କୁ ବ୍ୟୋମଚାରୀ ରୂପେ ବାଛିଲେ। ଜଳଭାଗରୁ ଧୀରଜ ମାଛ, ସ୍ଥଳଭାଗରୁ ଶ୍ୱେତାଙ୍ଗ ଠେକୁଆ ଓ ବ୍ୟୋମଭାଗରୁ ସୁବୋଧ କାଉକୁ ସର୍ବସମ୍ମତିକ୍ରମେ ବ୍ୟୋମଚାରୀ ରୂପେ ନିଯୁକ୍ତ କଲେ।

''ବର୍ତ୍ତମାନ ସ୍ଥିର ଚିତ୍ତରେ ଶୁଣନ୍ତୁ.....'' ବିଲୁଆ ମହାଶୟ କହିଚାଲିଲେ। ''ସହଜ କାମଟି ହୋଇଗଲା। ତାହା ହେଲା, ମହାକାଶଚାରୀଙ୍କ ନିଯୁକ୍ତି। କିନ୍ତୁ କଠିଣ କାମଟି ବାକି ରହିଲା। ତାହା

ହେଲା, ଚନ୍ଦ୍ରକୁ ଯାତ୍ରା କରିବାର ଉପାୟ। ମୋ ମତରେ ଆମ ପଶୁପକ୍ଷୀ ସମାଜ, ଚନ୍ଦ୍ରର ରୂପ ସୌନ୍ଦର୍ଯ୍ୟ ଓ ଉଜ୍ଜ୍ୱଳ କିରଣ ଉପଭୋଗ କରିବା ଛଡ଼ା ସେ ବିଷୟରେ ତାଙ୍କର ଅନ୍ୟ କୌଣସି ଜ୍ଞାନ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ। ମୋ ବିଚାରରେ, ଏ ଯାତ୍ରା ସଫଳ କରିବା ଦିଗରେ ଆମ୍ଭମାନଙ୍କର ଜଣେ ଦକ୍ଷ ବୈଜ୍ଞାନିକଙ୍କର ପରାମର୍ଶ ଓ ସାହାଯ୍ୟ ଏକାନ୍ତ ଆବଶ୍ୟକ। ଆପଣମାନେ ଜାଣି ଖୁସି ହେବେ ଯେ ସେପରି ଜଣେ ବୈଜ୍ଞାନିକ ମୋର ପରମ ମିତ୍ର। ସେ ଏକ ଉଲୁକ ବା ପେଚା। ତାଙ୍କ ନାମ ହେଲା ଜ୍ଞାନଚନ୍ଦ୍ର। ସଂକ୍ଷେପରେ ସେ ଜ୍ଞାନୀ ନାମରେ ପରିଚିତ। ବୁଦ୍ଧି ଓ ବିଜ୍ଞାନରେ ସେ ଆମ ପଶୁପକ୍ଷୀ ସମାଜରେ ଅଦ୍ୱିତୀୟ ଅଟନ୍ତି। ଆମେରିକା ମହାଦେଶର ଫ୍ଲୋରିଡ଼ା ନିବାସୀ ନାସା (NASA) କାର୍ଯ୍ୟାନୁଷ୍ଠାନର ପ୍ରଧାନ ଚାଳକ (Director)ଙ୍କ ବାସ ଗୃହ ପାଖ ଆମ୍ବ ଗଛ, ଜ୍ଞାନଚନ୍ଦ୍ରଙ୍କର ବାସସ୍ଥଳୀ। ସେ ମଧ୍ୟ ନାସା ପ୍ରଧାନ ଚାଳକଙ୍କର ଅତି ପ୍ରିୟ। ଜନ୍ମଗତ ବୁଦ୍ଧି ସହ, ସର୍ବଦା ଶହ ଶହ ବୈଜ୍ଞାନିକଙ୍କ ବିଜ୍ଞାନ ଆଲୋଚନା ଓ ପରାମର୍ଶ ଶୁଣୁଥିବାରୁ, ଜ୍ଞାନଚନ୍ଦ୍ର ମହାଜ୍ଞାନୀରୂପେ ଦେଶବିଦେଶରେ ସୁପରିଚିତ। ସେ ପ୍ରାଣୀ ହିତକର କାର୍ଯ୍ୟରେ ସହଯୋଗ କରିବାକୁ ସଦା ଉତ୍ସୁକ। ତେଣୁ ସେ, ଆମ୍ଭମାନଙ୍କର ଏ ଚନ୍ଦ୍ର ଅଭିଯାନ କାର୍ଯ୍ୟରେ ନିଶ୍ଚୟ ସହାୟତା କରିବେ ବୋଲି ମୋର ଦୃଢ଼ ବିଶ୍ୱାସ। ତେଣୁ, ଆମ ପଶୁପକ୍ଷୀ ସମାଜ ପକ୍ଷରୁ ଜ୍ଞାନଚନ୍ଦ୍ରଙ୍କୁ ନିମନ୍ତ୍ରଣ କରି ଏ ଜଂଗଲକୁ ଆଣିବାର ବନ୍ଦୋବସ୍ତ ଯଥାଶୀଘ୍ର କରାଯାଉ।

ବିଲୁଆ ମହାଶୟଙ୍କ କହିବା ଅନୁଯାୟୀ ଓ ସିଂହରାଜ ବଳବୀରଙ୍କର ଆଦେଶକ୍ରମେ, ଗୁପ୍ତଚର ଛଞ୍ଚାଣ ଦୂରଦର୍ଶୀ ଜ୍ଞାନଚନ୍ଦ୍ର ପେଚା ମହାଶୟଙ୍କ ନିକଟକୁ ଯିବାକୁ ପ୍ରସ୍ତୁତ ହୋଇଗଲା। ବର୍ଷବର୍ଷ ଧରି ଗୁପ୍ତଚର କାର୍ଯ୍ୟ କରିବା ଦ୍ୱାରା, ଛଞ୍ଚାଣ ଦୂରଦର୍ଶୀଙ୍କୁ ଫ୍ଲୋରିଡ଼ାର ସମସ୍ତ ରାସ୍ତାଘାଟ ଓ ଘରଦ୍ୱାରର ଠିକଣା ସଠିକ୍ ରୂପେ ଜଣାଥିଲା। ତେଣୁ କାଳବିଳମ୍ବ ନକରି, ସିଂହରାଜଙ୍କ ଲିଖିତ ନିମନ୍ତ୍ରଣ ପତ୍ରଟି ଧରି ସେ ସମସ୍ତଙ୍କଠାରୁ ବିଦାୟ ଗ୍ରହଣ କଲା ଓ ଫ୍ଲୋରିଡ଼ା ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲା।

# ଦ୍ୱିତୀୟ ପରିଚ୍ଛେଦ

ଅଳ୍ପଦିନ ମଧ୍ୟରେ ଛଞ୍ଚାଣ ଦୂରଦର୍ଶୀ, ଜ୍ଞାନଚନ୍ଦ୍ର ପେଚାମହାଶୟଙ୍କ ସହ ଜଂଗଲ ମଧ୍ୟକୁ ଫେରି ଆସିଲା। ଜ୍ଞାନଚନ୍ଦ୍ରଙ୍କୁ ଯଥୋଚିତ ସମ୍ବର୍ଦ୍ଧନା ଜଣାଇବା ପାଇଁ ପଶୁପକ୍ଷୀମାନେ ପତ୍ର ଫୁଲର ତୋରଣମାନ ନିର୍ମାଣ କରିଥିଲେ। ବିବିଧ ସୁସ୍ୱାଦୁ ଫଳ ଓ ସୁବାସିତ କୁସୁମ ହାରମାନ ଉପହାର ସ୍ୱରୂପ ଦେଇ ଜ୍ଞାନଚନ୍ଦ୍ରଙ୍କୁ ସ୍ୱାଗତ ଜଣାଇଥିଲେ। ତାଙ୍କ ମନୋରଞ୍ଜନ କରିବା ପାଇଁ ପଶୁପକ୍ଷୀଗଣ, ନୃତ୍ୟ, ଗୀତ ଓ ଅନ୍ୟାନ୍ୟ ଚାରୁକଳା ପ୍ରଦର୍ଶନ କରିଥିଲେ।

ଜ୍ଞାନଚନ୍ଦ୍ର ପଶୁପକ୍ଷୀଙ୍କ ସମ୍ବର୍ଦ୍ଧନାରେ ପ୍ରୀତ ହୋଇ, ଚଷମାଟି ଭଲକରି ଆଖି ଉପରେ ସଜାଡ଼ି ରଖି, ଅଳ୍ପ ହସି ଆରମ୍ଭ କଲେ --

''ଆପଣମାନେ ମୋ ଭଳି ଏକ ସାଧାରଣ ଜୀବକୁ ପଶୁପକ୍ଷୀ ସମାଜର ଉପଦେଷ୍ଟାର ଆସନ ପ୍ରଦାନ କରି ଉଚ୍ଚ ସମ୍ମାନ ଦେଇଥିବାରୁ, ମୁଁ ନିଜକୁ ଅତି ଭାଗ୍ୟବାନ ମନେ କରୁଛି। ସେଥିପାଇଁ ଆପଣମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ। ଆପଣମାନଙ୍କର ଏ ଚନ୍ଦ୍ର ଯାତ୍ରା ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ। ସେଥିରେ ମୁଁ ମନପ୍ରାଣ ଦେଇ ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛି। କିନ୍ତୁ ଏହି ଉଦ୍ୟମକୁ ସଫଳ କରିବା ଦିଗରେ ଏକ ବିରାଟ ପ୍ରତିବନ୍ଧକ ରହିଛି। ତାହା ହେଲା ସମୟ। ମାନବ ସମାଜ, ବର୍ଷ ବର୍ଷ ଗବେଷଣା ଓ ଚେଷ୍ଟା ଦ୍ୱାରା, ତାର ଏହି ଚନ୍ଦ୍ର ଯାତ୍ରାର ସ୍ୱପ୍ନକୁ ବାସ୍ତବରେ ପରିଣତ କରିବାକୁ ସକ୍ଷମ ହୋଇପାରିଛି। ଦୀର୍ଘ ବର୍ଷଗୁଡ଼ିକର ଗବେଷଣା ଜ୍ଞାନକୁ, ରକେଟ୍ ଯାନ ନିର୍ମାଣ କରିବାରେ ଲଗାଇଛି ଓ ମହାକାଶଚାରୀମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ, ଚନ୍ଦ୍ର ଯାତ୍ରା ପାଇଁ ପ୍ରସ୍ତୁତ କରିବାକୁ ସମର୍ଥ ହୋଇ ପାରିଛି। ଏ ସବୁ ଦୃଷ୍ଟିରୁ, ଆମ ପଶୁପକ୍ଷୀ ସମାଜର ପ୍ରଥମ ଚନ୍ଦ୍ରବିଜୟୀ ହେବାର ଉଚ୍ଚାଭିଳାଷ ଆକାଶ କୁସୁମ ପରି ମନେ ହେଉଛି। ସମୟ ଅଭାବରୁ ଆମେ ନିଜର ବାହନ ରକେଟ୍ ଯାନଟି ମଧ୍ୟ ଯଥା ସମୟରେ ନିର୍ମାଣ କରି ପ୍ରସ୍ତୁତ କରିବା ସମ୍ଭବପର ହେବ ନାହିଁ। ଏପରି ପରିସ୍ଥିତିରେ, ମୋ ମତରେ, ଆମ୍ଭେମାନେ ମାନବ ସମାଜର ସାହାଯ୍ୟ ପ୍ରାର୍ଥୀ ହେବା ଏକାନ୍ତ ଆବଶ୍ୟକ।'' ଜ୍ଞାନଚନ୍ଦ୍ର ବକ୍ତୃତା ଶେଷ କରିବା ମାତ୍ରେ ଚତୁର୍ଦ୍ଦିଗରୁ ପ୍ରତିବାଦର ରୋଳ ଜାଗି ଉଠିଲା।

''ନା....ନା.....ଅସମ୍ଭବ !!....କଦାପି ନୁହେଁ.....'' ଇତ୍ୟାଦି, ଇତ୍ୟାଦି। ''ବିଶ୍ୱାସ କରନ୍ତୁ'', ଜ୍ଞାନଚନ୍ଦ୍ର କହି ଉଠିଲେ, ''ଆପଣମାନଙ୍କର ନୈରାଶ୍ୟ ଓ ବିଷାଦ ମୁଁ ମଧ୍ୟ ଅନୁଭବ କରିପାରୁଛି। କିନ୍ତୁ, ଆପଣମାନେ ଭାବି ଦେଖନ୍ତୁ, ମାନବ ତାର ମହାକାଶ ଭ୍ରମଣର ପ୍ରଥମ ଚେଷ୍ଟାରେ, ଆମ ପଶୁପକ୍ଷୀ ସମାଜର ଭଉଣୀ ଲାଇକା ଓ ଭଉଣୀ ହାମ୍‌ଙ୍କର ସହାୟତା ଗ୍ରହଣ କରିଥିଲା। ତେଣୁ ଆମେ, ଏ ଚନ୍ଦ୍ରାଭିଯାନ ଉଦ୍ୟମରେ ମାନବର ସାହାଯ୍ୟ ଗ୍ରହଣ କଲେ, ଆମପାଇଁ ତାହା ଲଜ୍ଜ୍ୟା କିମ୍ବା ଅପମାନର ବିଷୟ ହେବ ନାହିଁ। ମୋ ମତରେ ଏପରି କଲେ ଆମ ପଶୁପକ୍ଷୀ ସମାଜର କୌଣସି କ୍ଷତି ହେବ ନାହିଁ; ବରଂ ଲାଭହେବ। ଆମ ସମାଜ ଏହାଦ୍ୱାରା ଅଦ୍ୱିତୀୟ ଚନ୍ଦ୍ରବିଜୟୀ ରୂପେ ପରିଗଣିତ ନ ହେଲେ ମଧ୍ୟ ମାନବର ସମସାମୟିକ ଚନ୍ଦ୍ରବିଜୟୀ ରୂପେ ଯୁଗ ଯୁଗକୁ ସ୍ମରଣୀୟ ହୋଇ ରହିବ। ତେଣୁ ଆପଣମାନେ ସ୍ଥିର ଚିତ୍ତରେ ବିଚାର କରି ମତାମତ ପ୍ରକାଶ କରନ୍ତୁ।''

ଜ୍ଞାନଚନ୍ଦ୍ରଙ୍କର କହିବା ଶେଷ ହେଲା ପରେ, ଉପସ୍ଥିତ ପଶୁପକ୍ଷୀ ମଣ୍ଡଳୀଙ୍କ ମଧ୍ୟରେ ବହୁ ସମୟ ପର୍ଯ୍ୟନ୍ତ ବାକ୍‌ବିତର୍କ ଲାଗି ରହିଲା। ଦେଶ ବିଦେଶରୁ ଆସିଥିବା ପଶୁପକ୍ଷୀ ପ୍ରତିନିଧିମାନେ ନିଜ ନିଜ ମଧ୍ୟରେ ଆଲୋଚନା କରି ଭିନ୍ନ ଭିନ୍ନ ଅଭିମତ ପ୍ରକାଶ କରିଥିଲେ। ତଥାପି କୌଣସି ସମାଧାନ ହୋଇପାରିଲା ନାହିଁ। ଅନନ୍ୟୋପାୟ ହୋଇ ଶେଷରେ ସମସ୍ତେ, ଜ୍ଞାନଚନ୍ଦ୍ର ପେଚା ମହାଶୟଙ୍କ ପ୍ରସ୍ତାବକୁ ସମର୍ଥନ କରିଥିଲେ।

ଜ୍ଞାନଚନ୍ଦ୍ର ସମସ୍ତଙ୍କୁ ଆଶା ଓ ଆଶ୍ୱାସନା ଦେଇ କହିଥିଲେ ଯେ, ନାସା (NASA)ର ପ୍ରଧାନ ଚାଳକ ତାଙ୍କର ଘନିଷ୍ଠ ବନ୍ଧୁ। ସେ ପଶୁପକ୍ଷୀ ପ୍ରିୟ ଓ ସେମାନଙ୍କର କଲ୍ୟାଣ ପାଇଁ ସଦା ଉତ୍ସୁକ। ତେଣୁ ସେ ପଶୁପକ୍ଷୀଙ୍କର ଏ ଚନ୍ଦ୍ରାଭିଯାନ କାର୍ଯ୍ୟରେ ନିଶ୍ଚୟ ସହାୟତା କରିବେ। ପଶୁପକ୍ଷୀ ବ୍ୟୋମଚାରୀଙ୍କର ଚନ୍ଦ୍ରଯାତ୍ରା ପାଇଁ ଆବଶ୍ୟକୀୟ ସମସ୍ତ ପଦାର୍ଥ ଯଥା: ରକେଟ୍ ଯାନ,

ଉପଯୁକ୍ତ ଖାଦ୍ୟପେୟ ଓ ପୋଷାକପତ୍ର ଇତ୍ୟାଦିର ବନ୍ଦୋବସ୍ତ କରିବା ପାଇଁ ପେଚା ମହାଶୟଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ ବୋଲି ସେ ପଶୁପକ୍ଷୀଙ୍କୁ ନିଶ୍ଚିତ ଭାବେ କହିଥିଲେ। ଏହାଛଡ଼ା, ପେଚାମହାଶୟ ନିଜେ ପଶୁପକ୍ଷୀ ବ୍ୟୋମଚାରୀ ତିନି ଜଣଙ୍କର ପରାମର୍ଶଦାତା ରୂପେ ସେମାନଙ୍କ ସହ ଚନ୍ଦ୍ରକୁ ଯାତ୍ରା କରିବାର ପ୍ରତିଶ୍ରୁତି ମଧ ଦେଇଥିଲେ। ଚନ୍ଦ୍ରାଭିଯାନ ପୂର୍ବରୁ ଯେଉଁ କେତୋଟି ଦିନ ରହିଲା, ସେହି ସମୟ ମଧରେ ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରି ଚ଼ନ୍ଦ୍ରଯାତ୍ରା ପାଇଁ ପ୍ରସ୍ତୁତ କରିବାକୁ ଉପଦେଶ ଦେଇଥିଲେ। ଚନ୍ଦ୍ରଯାତ୍ରାର ସମସ୍ତ ଆୟୋଜନର ବିବରଣୀ ସିଂହରାଜଙ୍କୁ ପତ୍ରରେ ଲେଖି ଜଣାଇବେ ବୋଲି କଥା ଦେଇ ପେଚା ମହାଶୟ ଫ୍ଲୋରିଡ଼ା ପ୍ରତ୍ୟାବର୍ତ୍ତନ କରିଥିଲେ।

ଫ୍ଲୋରିଡ଼ାର ନାସା(NASA) ଅନୁଷ୍ଠାନର ପ୍ରଧାନଚାଳକଙ୍କ ସହ ମନ୍ତ୍ରଣା କରି, ପଶୁପକ୍ଷୀଙ୍କ ଚନ୍ଦ୍ରାଭିଯାନ ପାଇଁ ଅନୁମତି ଓ ସହାୟତାର ପ୍ରତିଶ୍ରୁତି, ପେଚା ମହାଶୟ ଅତି ଶୀଘ୍ର ପାଇଥିଲେ। ନାସାର ଇଞ୍ଜିନିୟର ଓ କର୍ମଚାରୀଗଣଙ୍କ ସହାୟତା ଓ ନିଜର ଅବିଶ୍ରାନ୍ତ ପରିଶ୍ରମ ଦ୍ୱାରା, ପେଚାମହାଶୟ, ତିନିଜଣ ପଶୁପକ୍ଷୀ ବ୍ୟୋମଚାରୀଙ୍କ ସହ ନିଜର ଚନ୍ଦ୍ର ଯାତ୍ରା ଉପଯୋଗୀ ରକେଟ୍ ଯାନଟି ନିର୍ମାଣ କରିବାକୁ ସକ୍ଷମ ହୋଇଥିଲେ। ପଶୁପକ୍ଷୀଙ୍କର ଏହି ମହାକାଶ ଯାନଟି ମାନବ ସମାଜ ଦ୍ୱାରା ଚନ୍ଦ୍ର ଯାତ୍ରା ଉଦ୍ଦେଶ୍ୟରେ ନିର୍ମିତ ଆପୋଲୋ-୧୧ (Apollo-11)ର କ୍ଷୁଦ୍ରକାୟ ପ୍ରତିକୃତି ଥିଲା। ଏହାଛଡ଼ା ପେଚା ମହାଶୟ, ପଶୁପକ୍ଷୀ ବ୍ୟୋମଚାରୀ ଓ ନିଜ ମାପରେ, ବ୍ୟୋମଚାରୀ ପୋଷାକ (Space suit), ଶିରାଭରଣ (Helmet), ଜୀବନରକ୍ଷକପେଟି (Life support system) ଇତ୍ୟାଦିର ବନ୍ଦୋବସ୍ତ କରିବା ସହ ସେମାନଙ୍କର ଉପଯୁକ୍ତ ଖାଦ୍ୟପେୟ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ସାମଗ୍ରୀର ଆୟୋଜନ କରିଥିଲେ। ଆପୋଲୋ-୧୧ (Apollo-11) ସହ ପଶୁପକ୍ଷୀଙ୍କ କ୍ଷୁଦ୍ର ଯାନଟି ଏକା ସ୍ଥାନ, ଦିନ ଓ ସମୟରେ ଭୂପୃଷ୍ଠ ତ୍ୟାଗ କରି ଚନ୍ଦ୍ର ଉଦ୍ଦେଶ୍ୟରେ ଯାତ୍ରା କରିବାର ଅନୁମତି ପତ୍ର ମଧ ନାସାର ପ୍ରଧାନ ଚାଳକଙ୍କଠାରୁ ପାଇଥିଲା। ସମସ୍ତ ବନ୍ଦୋବସ୍ତ କରିସାରି ପେଚା ମହାଶୟ, ଏ ଶୁଭ ଖବର ସହ, ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣଙ୍କୁ ଯଥାଶୀଘ୍ର ଫ୍ଲୋରିଡ଼ାରେ ଉପସ୍ଥିତ ହେବା ପାଇଁ ଉଲ୍ଲେଖ କରି ପତ୍ରଟି ଛଞ୍ଚାଣ ଦୂରଦର୍ଶୀ ମହାଶୟଙ୍କ ହାତରେ ସିଂହରାଜ ବଳବୀରଙ୍କ ନିକଟକୁ ପଠାଇଦେଲେ। ସିଂହରାଜ ପତ୍ର ପାଇ ସମସ୍ତ ପଶୁପକ୍ଷୀଙ୍କୁ ଏକତ୍ର କଲେ ଓ ଶୁଭ ଖବରଟି ପଢ଼ି ଶୁଣାଇ ଦେଇଥିଲେ।

ପତ୍ର ଅନୁଯାୟୀ ପଶୁପକ୍ଷୀ ମହାକାଶଚାରୀ ତିନିଜଣ, ଯଥା :- ସୁବୋଧ କାଉ, ଶ୍ୱେତାଙ୍ଗ ଠେକୁଆ ଓ ଧୀରଜ ମାଛ ଫ୍ଲୋରିଡ଼ା ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଥିଲେ। ସେମାନଙ୍କ ସହ ସାଙ୍ଗ-ସାଥି, ବନ୍ଧୁ-କୁଟୁମ୍ବ ମଧ ଯାତ୍ରାରେ ଯୋଗ ଦେଇଥିଲେ। ପେଚା ମହାଶୟଙ୍କ ପତ୍ର ଦ୍ୱାରା ନିର୍ଦ୍ଦିଷ୍ଟ ସମୟ ପ୍ରତି ବିଶେଷ ଧ୍ୟାନ ନଦେଇ ବ୍ୟୋମଚାରୀ ପଶୁପକ୍ଷୀ ତିନିଜଣ ଯାତ୍ରାକାଳ ଅବସର ବିନୋଦନ ଭଳି ବିଭିନ୍ନ ସ୍ଥାନ ପରିଦର୍ଶନ କରି ମଉଜ ମଜଲିସ୍‌ରେ ସମୟ ବିତାଇଥିଲେ। ଅବଶେଷରେ, ଚନ୍ଦ୍ରଯାତ୍ରାର ପୂର୍ବ ଦିନ ସଂଧ୍ୟାରେ ସେମାନେ ଫ୍ଲୋରିଡ଼ାରେ ଉପସ୍ଥିତ ହେଲେ।

ପଶୁପକ୍ଷୀ ବ୍ୟୋମଚାରୀଙ୍କର ଫ୍ଲୋରିଡ଼ାରେ ପହଞ୍ଚିବା ବିଳମ୍ବ ହେବାରୁ, ପେଚାମହାଶୟ, ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲେ। ସେମାନଙ୍କର ଫ୍ଲୋରିଡ଼ାରେ ଉପସ୍ଥିତିର ଖବର ପାଇ ସେ ଅତି ଶୀଘ୍ର ଯାଇ ସେ ସ୍ଥାନରେ ପହଞ୍ଚିଗଲେ। କିନ୍ତୁ, ସେଠି ପହଞ୍ଚି ଯେଉଁ ଦୃଶ୍ୟ ଦେଖିଲେ, ସେ ତାହା

ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ। ସେ ଦେଖିଲେ, ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ଓ ସେମାନଙ୍କର ସାଥିମାନେ ବିଚିତ୍ର ବେଶଭୂଷା ପିନ୍ଧି, ଗୀତ ଗାଇ, ସିଟି ମାରି, ପାଗଳଙ୍କ ଭଳି ଚିତ୍କାରକରି ନାଚକୁଦରେ ମାତିଥିଲେ। ଯାଗାଟି ଗହଳଚହଳ ହୋଇ ପାଟିତୁଣ୍ଡରେ ଫାଟି ପଡୁଥିଲା।

"ବନ୍ଦ୍ କର!.......ବନ୍ଦ୍ କର!! ଏ କି ତାମସା ଲାଗିଛି?" ପେଚାମହାଶୟ ଉଚ୍ଚ ସ୍ୱରରେ କହି ଉଠିଲେ। "ତୁମ୍ଭମାନଙ୍କର ରୂପଭେକ ଓ ବ୍ୟବହାର ଦେଖିଲେ ମନେ ହେଉଛି, ସତେ ଯେପରି ଏକ ଯାତ୍ରା ପାର୍ଟି ସହରରେ ଉପସ୍ଥିତ ହେଲା। ଶୋଚନାର ବିଷୟ ଏହି ଯେ, ତୁମେ ମୋ ପତ୍ର ଉଲ୍ଲିଖିତ ସମୟ ପ୍ରତି ତିଳେବି ଦୃଷ୍ଟି ନଦେଇ ମନ ମୁତାବକ ଏତେ ବିଳମ୍ବ କରି ଫ୍ଲୋରିଡ଼ାରେ ଉପସ୍ଥିତ ହେଲ। ସେଥିପାଇଁ ତୁମର ଚିନ୍ତା ନାହିଁ। ପୁଣି ତା ଉପରେ ଏ ଆନନ୍ଦ ଉତ୍ସବ, ନାଚତାମସା ଲଗାଇଛ? ତୁମ୍ଭମାନଙ୍କର ଏ ବିଳମ୍ବତାର ପରିଣାମ କଣ ତାହା ଜାଣିଛ? ଅବଶ୍ୟ ନୁହେଁ। ମୁଁ ତୁମ୍ଭମାନଙ୍କୁ ସେହି ପରିଣାମ ବିଷୟରେ କହୁଛି ଶୁଣ। ତୁମେ ତିନିଜଣ ବ୍ୟୋମଚାରୀ ଏତେ ଡ଼େରିରେ ଆସି ପହଞ୍ଚିବା ଦ୍ୱାରା, ଚନ୍ଦ୍ର ଅଭିଯାନ ବିଷୟରେ ବହୁ ଜରୁରୀ ଆଲୋଚନା ହୋଇ ପାରିଲା ନାହିଁ। ଚନ୍ଦ୍ରଅଭିଯାନ କାଳରେ ବ୍ୟୋମଚାରୀମାନଙ୍କୁ ବହୁ ଅଭିନବ ଓ ପ୍ରତିକୂଳ ପରିବେଶ ମଧ୍ୟରେ ଅନେକ ଜଟିଳ କାର୍ଯ୍ୟ ସମ୍ପନ୍ନ କରିବାକୁ ପଡିଥାଏ। ତେଣୁ, ସେଥିରେ ସଫଳତା ଲାଭ କରିବା ଦୃଷ୍ଟିରୁ ଉଦ୍ଦିଷ୍ଟ, କେତେଗୁଡ଼ିଏ କାର୍ଯ୍ୟ ତୁମ୍ଭମାନଙ୍କ ଦ୍ୱାରା ସମ୍ପାଦିତ ହୋଇ ପାରିଲା ନାହିଁ। ଫଳରେ ଚନ୍ଦ୍ରାଭିଯାନ କାଳରେ ଆମ୍ଭମାନଙ୍କୁ ବହୁ ସମସ୍ୟାର ସମ୍ମୁଖୀନ ହେବାକୁ ପଡିବ। ଚନ୍ଦ୍ର ଯାତ୍ରା ପୂର୍ବରୁ କିଛି ପରିମାଣରେ ଆନନ୍ଦ ଉତ୍ତେଜନା ଅନୁଭବ କରିବା ଅତି ସ୍ୱାଭାବିକ। କିନ୍ତୁ, ତୁମମାନଙ୍କର ଏ ହଲ୍ଲାଗୁଲ୍ଲା, ନାଚତାମସା ସବୁ ସୀମା ଲଂଘନ କଲାଣି। ତୁମ୍ଭେମାନେ ଏ ଚନ୍ଦ୍ରାଭିଯାନକୁ ଅତି ମାମୁଲୀ କାର୍ଯ୍ୟ ବୋଲି ମନେ କରିଛ ବୋଧେ? ତୁମ୍ଭମାନଙ୍କର ଧାରଣା ଭୁଲ। ଏ କାର୍ଯ୍ୟ ପିଲା ଖେଳ ନୁହେଁ। ଏହା ଏକ ଗୁରୁଦାୟୀତ୍ୱପୂର୍ଣ୍ଣ କାର୍ଯ୍ୟ। ତେଣୁ, ତୁମେ ବ୍ୟୋମଚାରୀ ତିନିଜଣ ଏହି ମୁହୂର୍ତ୍ତରେ ସବୁ ଗହଳ ଚହଳ ଛାଡି ମୋ ସହିତ ଆସ। ତୁମ ପାଇଁ ପ୍ରସ୍ତୁତ ହୋଇଥିବା ବାସଭବନ ମୁଁ ଦେଖାଇ ଦେବି। ତୁମ୍ଭେମାନେ ସେଠି ନିଷ୍ଚିନ୍ତରେ ରାତି ପାଇଁ ବିଶ୍ରାମ ନେବ।" ଏପରି କହି ପେଚା ମହାଶୟ ଅଗ୍ରସର ହେଲେ। ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ପେଚା ମହାଶୟଙ୍କୁ ଅନୁସରଣ କରି, ସେମାନଙ୍କ ପାଇଁ ବନ୍ଦୋବସ୍ତ କରାହୋଇଥିବା ବାସଗୃହରେ ଉପସ୍ଥିତ ହେଲେ। ପେଚା ମହାଶୟ, ସେମାନଙ୍କଠାରୁ ବିଦାୟନେବା ପୂର୍ବରୁ କହିଲେ, "ତୁମେ ତିନିଜଣ କାଲି ସକାଳେ ଯଥା ଶୀଘ୍ର କାର୍ଯ୍ୟକ୍ଷେତ୍ରରେ ଉପସ୍ଥିତ ହେବ। କାରଣ ଆସନ୍ତା କାଲି, ୧୯୬୯ ମସିହାର ଜୁଲାଇ ୧୬ ତାରିଖ ଆମ ପଶୁପକ୍ଷୀଙ୍କ ପାଇଁ ଏକ କର୍ମମୟ ସ୍ମରଣୀୟ ଦିବସ ହେବ। ବିଳମ୍ବ କରିବ ନାହିଁ। ଶୁଭରାତ୍ରି।" ଏପରି କହି ପେଚା ମହାଶୟ ପ୍ରସ୍ଥାନ କଲେ।

## ତୃତୀୟ ପରିଚ୍ଛେଦ

୧୯୬୯ ମସିହା, ଜୁଲାଇ ୧୬ ତାରିଖ ଦିନ, ଫ୍ଲୋରିଡାର କେପ୍‌କେନେଡି (Cape Kennedy) ଅନ୍ତରୀପର ମେଘମୁକ୍ତ ନୀଳ ଆକାଶ ତଳେ ଏକ ଐତିହାସିକ ଘଟଣା ଘଟିବାକୁ ଯାଉଥିଲା।

ଆପୋଲୋ-୧୧ (Apollo-11) ରକେଟ୍ ଯାନଟି, ଚନ୍ଦ୍ରାଭିମୁଖେ ଯାତ୍ରା କରିବା ପାଇଁ ଏକ ସିମେଣ୍ଟ ନିର୍ମିତ ମଞ୍ଚ ବା ମଣ୍ଡପ ଉପରେ ସ୍ଥିର ହୋଇ ରହିଥିଲା। ଯାନଟିର ତଳପଟରୁ ହିସ୍ ହିସ୍ ଶବ୍ଦ କରି ଅଳ୍ପ ଅଳ୍ପ ଧୂଆଁ ନିର୍ଗତ ହେଉଥିଲା। ତାହାର ପାଖାପାଖି, ଜୀବଜନ୍ତୁଙ୍କର ଛୋଟ ଯାନଟି ମଧ୍ୟ ସେ ମଞ୍ଚ ଉପରେ ପ୍ରସ୍ତୁତ ହୋଇ ରହିଥିଲା। ସେଦିନ କେପ୍‌କେନେଡି ପାର୍ଶ୍ୱବର୍ତ୍ତୀ ପ୍ରାନ୍ତର ଓ ସମୁଦ୍ର ବେଳାଭୂମୀ ଗୁଡିକ ଲୋକାରଣ୍ୟ ହୋଇ ଉଠିଥିଲା। ଦର୍ଶକମାନଙ୍କ ମଧ୍ୟରେ, ବେତାର ଓ ଟେଲିଭିଜନ ପ୍ରସାରଣ ଲୋକ, କ୍ୟାମେରା ଲୋକ, ସମ୍ବାଦଦାତା, ଲେଖକ ଇତ୍ୟାଦି ବିଭିନ୍ନ ବୃତ୍ତିର ଲୋକମାନେ ଏକତ୍ରିତ ହୋଇ, ଆପୋଲୋ-୧୧ ଯାନର ଫୋଟୋ ଉଠାଇବା ସମ୍ବାଦ ସଂଗ୍ରହ କରିବା ପ୍ରଭୃତି କାର୍ଯ୍ୟରେ ବ୍ୟସ୍ତ ରହିଥିଲେ। ଆଖପାଖ ବୃକ୍ଷ, ଗୁଳ୍ମ ଓ ଜଙ୍ଗଲିଆ ସ୍ଥାନ ଗୁଡିକର ଅନ୍ତରାଳରେ ବହୁ ପଶୁପକ୍ଷୀ ଏକତ୍ରିତ ହୋଇ ଉତ୍‌କଣ୍ଠିତ ଭାବେ ମଣ୍ଡପ ଉପରେ ରହିଥିବା ରକେଟ୍ ଯାନ ଦୁଇଟିକୁ ଏକ ଧ୍ୟାନରେ ଚାହିଁ ପ୍ରତୀକ୍ଷା କରି ରହିଥିଲେ।

ନାସା (NASA)ର ପ୍ରସ୍ତୁତି ଭବନରେ (Ready Room) ମାନବ ବ୍ୟୋମଚାରୀ ତିନିଜଣ ଯଥା- ଏଡ୍‌ୱିନ୍ ଆଲ୍‌ଡ୍ରିନ (Edwin Aldrin), ମାଇକଲ୍ କଲିନ୍ସ (Michael Collins), ଓ ନିଲ୍ ଆର୍ମଷ୍ଟ୍ରଙ୍ଗ୍ (Neil Armstrong) ନିଜ ନିଜର ବ୍ୟୋମଚାରୀ ପୋଷାକ, ଟୋପି ଓ ଜୋତା ଇତ୍ୟାଦି ପିନ୍ଧିବା ଓ ଭୂପୃଷ୍ଠ ତ୍ୟାଗ କରିବା ପୂର୍ବରୁ ଡାକ୍ତରୀ ପରୀକ୍ଷା ଇତ୍ୟାଦିରେ ବ୍ୟସ୍ତ ରହିଥିଲେ।

ସେହି ପ୍ରସ୍ତୁତି ଭବନର ଏକ ଭାଗରେ ଜ୍ଞାନଚନ୍ଦ୍ର ପେଚାମହାଶୟ, ଉଦ୍‌ବିଗ୍ନ ଚିତ୍ତରେ, ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ଯଥା:- ସୁବୋଧ କାଉ, ଶ୍ୱେତାଙ୍ଗ ଠେକୁଆ ଓ ଧୀରଜ ମାଛଙ୍କ ଆଗମନକୁ ପ୍ରତୀକ୍ଷା କରି ରହିଥିଲେ। କିନ୍ତୁ, ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣଙ୍କର ଦେଖାଦର୍ଶନ ନ ଥିଲା। ପେଚାମହାଶୟ ବ୍ୟସ୍ତ ହୋଇ ସେ କୋଠରୀ ମଧ୍ୟରେ ଅସ୍ଥିର ଭାବେ ଇତସ୍ତତଃ ପଦଚାରଣ କରିବା ସହ କାନ୍ଥରେ ଝୁଲୁଥିବା ଘଡି ଆଡ଼େ ବାରମ୍ବାର ଦୃଷ୍ଟିପାତ କରୁଥାଆନ୍ତି।

''ସମସ୍ତେ ଗଲେ କୁଆଡେ?'' ପେଚାମହାଶୟ ମନେ ମନେ କହି ଉଠିଲେ, ଆଉ ଅପେକ୍ଷା କରି ନପାରି ପଶୁପକ୍ଷୀ ବ୍ୟୋମଚାରୀଙ୍କର ବାସ ଭବନକୁ ଟେଲିଫୋନ୍ କରିବା ପାଇଁ ଫୋନ୍ ଉଠାଇଲେ। ହଠାତ୍, ଝାଳ ନାଳ, ଧଇଁସଇଁ ହୋଇ ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ପ୍ରସ୍ତୁତି ଭବନ ମଧ୍ୟକୁ ପ୍ରବେଶ କଲେ। ସେମାନଙ୍କର ମୁଣ୍ଡରୁ ଆରମ୍ଭ କରି ଗୋଡ଼ଯାଏ ପୂଡା ପୁଟୁଳା ଝୁଲି ରହିଥିଲା। ପେଚାମହାଶୟ କିଛି କହିବା ପୂର୍ବରୁ ଶ୍ୱେତାଙ୍ଗ ଠେକୁଆ ଆରମ୍ଭ କଲା--

''ଆମ୍ଭମାନଙ୍କର ବିଳମ୍ବ ହୋଇଥିବାରୁ କ୍ଷମା କରିବେ। କିନ୍ତୁ ଆମ ପାଇଁ ଆଉ କିଛି ଉପାୟ ନଥିଲା। ଏତେ ଗୁଡିଏ ଜିନିଷ ଏକାଠି କରି ବୋହି ବୋହି ଆଣିବାକୁ ଆମକୁ ସମୟ ଲାଗିଲା। ଏହା ଆଦୌ ସହଜ କାମ ନୁହେଁ।''

''ତୁମ୍ଭେମାନେ କି କି ଜିନିଷପତ୍ର ବୋହି ଆଣିଛ?'' ପେଚାମହାଶୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

''ବହୁତ କିଛି ଆଣିଛୁ'', ଠେକୁଆ ଝଟ୍ କରି କହି ପକାଇଲା। ଆମେ ତିନିଜଣ ନିଜ ନିଜର ପ୍ରିୟ ଖାଦ୍ୟ ବସ୍ତୁ କିଛି କିଛି ନେଇ ଆସିଛୁ। ବାଟରେ ପାଟିରେ ପକାଇବା ପାଇଁ ମୁଁ ମୋ ମନ ମାଫିକ୍ ରସ ରସିଆ ତାଜା ଗାଜରରୁ ବସ୍ତାଏ ନେଇ ଆସିଛି। ଧୀରଜ ମାଛ ଭାଇ, ତାଙ୍କର ପ୍ରିୟ ମୁଡ଼ମୁଡିଆ, ଶୁଖିଲା ପୋକ ଜୋକରୁ ଟିଣେ ଆଣିଛନ୍ତି। ଆଉ ବନ୍ଧୁ ସୁବୋଧ

କାଉ ତାଙ୍କ ରୁଚିର ଦୁଇବସ୍ତା ମକା ଓ ବାଜରା ବୋହି ଆଣିଛନ୍ତି।''

''ଏହାଛଡ଼ା.....'', କାଉ ପାଳି ଧରିଲା ଭଳି ସଙ୍ଗେ ସଙ୍ଗେ ଆରମ୍ଭ କଲା, ''ଶୋଇବା ପାଇଁ ବେଡିଂ, ରହିବା ପାଇଁ ତମ୍ବୁ, ପିଇବା ପାଇଁ ପାଣି, ଖେଳିବା ପାଇଁ ତାସ୍ ଓ ଚେସ ଓ ବଜାଇବା ପାଇଁ ଗୋଟେ ଗିଟାର ମଧ୍ୟ ସାଙ୍ଗରେ ନେଇ ଆସିଛୁ। କିଏ ଜାଣେ? ବାଟରେ କିମ୍ବା ଚନ୍ଦ୍ରରେ ପହଞ୍ଚିଲା ପରେ ଏସବୁ ଜିନିଷ ମିଳିବ କି ନାହିଁ? ତେଣୁ ପୂର୍ବରୁ ଏ ସବୁର ବନ୍ଦୋବସ୍ତ କରି ନେଇ ଆସିଛୁ ଯେପରି ଆମର କିଛି ଅସୁବିଧା ନ ହୁଏ। ଯା.... ଆ....ଆ...ହୁ...ଉ...ଉ! କି ମଜା ହେବ!! ମୁଁ ଠିକ୍ କହୁଛି ନା ଜ୍ଞାନୀ ମହାଶୟ?''

ପେଚା ମହାଶୟ ପଶୁପକ୍ଷୀ ବ୍ୟୋମଚାରୀଙ୍କ ବିକଳତା ଯୋଗୁ ରାଗିଥିଲେ ମଧ୍ୟ ସେମାନଙ୍କର କଥା ଶୁଣି ହୋ... ହୋ ....ହୋ.... କରି ହସି ଉଠିଲେ ଓ କହିଲେ।

''ତୁମ୍ଭେମାନେ ମତେ ସର୍କସ୍‌ର ଜୋକର ଦଳ ଭଳି ଦେଖା ଯାଉଛ। ଆରେ ହେ!!......, ତୁମେ ସମସ୍ତେ କେଉଁଠିକୁ ଯାଉଛ ବୋଲି ଭାବୁଛ? କ୍ୟାମ୍ପ ଟ୍ରିପ୍‌ରେ କାଶ୍ମୀର ନା ବାହାମା ଦ୍ୱୀପକୁ ଯାଉଛ? ପୁଣି ସେଠି ପହଞ୍ଚି ତମ୍ବୁ ପକାଇ ରହିବ। ଆଉ ଖୋଲା ଆକାଶ ତଳେ ଗିଟାର ବଜାଇ ଗୀତ ଗାଇବୁଲିବ। ତାସ୍ ଓ ଚେସ୍ ଖେଳିବ। ପୁଣି...... ଯାତ୍ରାର ବାହନ ଏକ ବିରାଟ ଜେଟ୍ ବିମାନ ହୋଇଥିବ ବୋଲି ଭାବି ନେଇଛ ନିଶ୍ଚୟ। ଯାହା ଭିତରେ ଏ ସବୁ ପୁଟା ପୁଟୁଳା ଲଦି ଗୋଡ଼ ହାତ ମେଲାଇ ମହା ଆରାମରେ ଶୋଇ ଶୋଇ ଯାତ୍ରା କରିବ। ତୁମ୍ଭମାନଙ୍କର ଧାରଣା ଭୁଲ୍। ମୁଁ ତୁମକୁ ବୁଝାଇ କହିବି। ମନ ଦେଇ, କାନ ଖୋଲି ଶୁଣ। ତୁମ୍ଭେମାନେ ଚନ୍ଦ୍ରକୁ ଯାତ୍ରା କରୁଛ। ଚନ୍ଦ୍ର ଏକ ସୁଦୂର ଅଜଣା ସ୍ଥାନ ଯେଉଁଠି ଆଜି ପର୍ଯ୍ୟନ୍ତ ମନୁଷ୍ୟ କିମ୍ବା ଅନ୍ୟ କୌଣସି ଜୀବ ପାଦ ପକାଇ ନାହିଁ। ଆଉ ତୁମ୍ଭମାନଙ୍କର ଯାତ୍ରାର ବାହନ ହେଲା ଏକ କ୍ଷୁଦ୍ରକାୟ ରକେଟ୍ ଯାନ ଯାହା ଭିତରେ ଆମେ ଚାରିଜଣ ପଶୁପକ୍ଷୀ ଜାକିଜୁକି ହୋଇ ବସିବା ବି କଷ୍ଟକର।''

''କିନ୍ତୁ, ଜ୍ଞାନୀ ମହାଶୟ....,'' ଠେକୁଆ କଥା ମଝିରେ ବାଧାଦେଇ କହି ଉଠିଲା। ''ଆମ୍ଭେମାନେ ତ ଦୂରରୁ ସେ ରକେଟ୍ ଯାନଟିକୁ ଦେଖିଛୁ। ତାହା ଆମକୁ ବେଶ୍ ବିରାଟ ମନେ ହେଲା। ମୋ ମତରେ, ଆମେ ଚାରିଜଣ କଣ ଆମ ଭଳି ଶହ ଶହ ଜୀବ ମଧ୍ୟ ତା ଭିତରେ ଅକ୍ଳେଶରେ ପଶି ଯାଇ ପାରିବେ। ଆମ ପୁଟା ପୁଟୁଳା ଭଳି କ୍ୱିଣ୍ଟାଲ୍ କ୍ୱିଣ୍ଟାଲ୍ ଜିନିଷ ମଧ୍ୟ ତା ଭିତରେ ଅନାୟାସରେ ରହି ଯିବ।''

ଠେକୁଆ କଥା ଶୁଣି, ପେଚା ମହାଶୟ ଖୁବ୍ ଜୋର୍‌ରେ ହସି ଉଠି କହିଲେ, ''ଆରେ, ତୁମେ ସମସ୍ତେ ଭୁଲ୍ ଦେଖିଛ। ତୁମେମାନେ ପ୍ରକୃତପକ୍ଷେ ମାନବ ବ୍ୟୋମଚାରୀଙ୍କ ଯାନ ଆପୋଲୋ-୧୧ ଟିକୁ ଦୂରରୁ ଦେଖି ସେପରି କହୁଛ। ମୋ ଚିଠି ଅନୁଯାୟୀ ତୁମେ ତିନିଜଣ ଠିକ୍ ସମୟରେ ଆସି ଫ୍ଲୋରିଡାରେ ଉପସ୍ଥିତ ହୋଇଥିଲେ, ତୁମ୍ଭମାନଙ୍କର ଏପରି ଭ୍ରମ ହୋଇ ନଥାନ୍ତା କାରଣ, ଯଥାସମୟରେ ମୁଁ ତୁମ୍ଭମାନଙ୍କୁ ଆମ ପଶୁପକ୍ଷୀଙ୍କ କ୍ଷୁଦ୍ର ରକେଟ ଯାନଟିକୁ ଦେଖାଇ ଦେଇଥାଆନ୍ତି ଓ ତତ୍‌ସମ୍ବନ୍ଧୀୟ ସମସ୍ତ ବିଷୟ ମଧ୍ୟ ବୁଝାଇ କହି ଦେଇ ଥାଆନ୍ତି। ବର୍ତ୍ତମାନ ତୁମ୍ଭମାନଙ୍କର ଏ ଭ୍ରମଧାରଣା ଦୂର କରିବାକୁ ମୁଁ ବୁଝାଇ କହୁଛି ଶୁଣ। ତୁମ୍ଭେମାନେ ଦୂରରୁ ଦେଖିଥିବା ମାନବ ବ୍ୟୋମଚାରୀଙ୍କର ଚନ୍ଦ୍ରାଭିଯାନ ଉଦ୍ଦେଶ୍ୟରେ ନିର୍ମିତ ଯାନ, ଆପୋଲୋ-୧୧ ର ସମୁଦାୟ ଉଚ୍ଚତା

୩୬୦ ଫୁଟ। ତାହା ନିଉୟର୍କରେ ଥିବା ଷ୍ଟାଚ୍ୟୁ ଅଫ୍ ଲିବର୍ଟି (Statue of Liberty) ଠାରୁ ମଧ୍ୟ ଅଧିକ ଉଚ୍ଚ। କିନ୍ତୁ, ସେ ରକେଟ୍ ଯାନଟିର ସମୁଦାୟଟା ମାନବ ବ୍ୟୋମଚାରୀଙ୍କର ବାସ୍ କୋଠରୀ ନୁହେଁ। ସେମାନଙ୍କ ରହିବାର କୋଠରୀଟି ଗୋଟିଏ ଷ୍ଟେସନ୍ ୱାଗନ୍ କାର୍‌ର ଭିତରେ ଭଳି ଛୋଟ। ଏହି ଭାଗଟିର କାନ୍ଥ ଗୁଡିକରେ ବିଭିନ୍ନ ଯନ୍ତ୍ରପାତି ଖଞ୍ଜା ହୋଇ ଭରି ରହିଛି। ସେହି କୋଠରୀ ମଧ୍ୟରେ ରୋଷେଇ ଘର, ଶୌଚାଳୟ ଓ ବସିବା ଚେଆର ଦୁଇଟିର ପଛପଟେ ଶୋଇବା ଘର ଅଛି। ପୁଣି ସେ କକ୍ଷ ମଧ୍ୟରେ ବହୁତ ଗୁଡିଏ ଥାକ ରହିଛି। ସେହି ଥାକ ଗୁଡିକରେ ବ୍ୟୋମଚାରୀ ମାନଙ୍କର ଚନ୍ଦ୍ରକୁ ଯିବା ଓ ଆସିବା ସମୟ ସହ ଆଉ ଅଧିକା କେତୋଟି ଦିନ ମିଶାଇ ସମୁଦାୟ ୧୨ ଦିନ ପାଇଁ ପ୍ରୟୋଜନୀୟ ପଦାର୍ଥ ଗୁଡିକ ରଖାଯାଇଛି। ସେଗୁଡିକ ହେଲା ଖାଦ୍ୟପୁଡା, ପାନୀୟ ଜଳ, ଲୁଗାପଟା ଓ ଦୈନନ୍ଦିନ ନିତ୍ୟକର୍ମ ପାଇଁ ବ୍ୟବହୃତ ସାମଗ୍ରୀ, ଯଥା:-ସାବୁନ୍ ପାନିଆ, ଦାନ୍ତଘସା ବ୍ରସ୍ ଇତ୍ୟାଦି। ତେଣୁ, ବ୍ୟୋମଚାରୀଙ୍କର ଚଳ ପ୍ରଚଳର ସ୍ଥାନ ଅତ୍ୟନ୍ତ ସୀମିତ। ଆମ ପଶୁପକ୍ଷୀଙ୍କ ଯାନଟି ଆପୋଲୋ-୧୧ ଯାନର ଏକ କ୍ଷୁଦ୍ରକାୟ ପ୍ରତିକୃତି। କିନ୍ତୁ ମାନବ ବ୍ୟୋମଚାରୀଙ୍କ ସଂଖ୍ୟା ତୁଳନାରେ ଆମେ ସଂଖ୍ୟାରେ ଜଣେ ଅଧିକ ଥିବାରୁ ଆମ ଯାନ ଓ ବ୍ୟୋମଚାରୀଙ୍କ ଯାନର ଆବାସ କକ୍ଷ ଭିତରେ ଟିକେ ପାର୍ଥକ୍ୟ ରହିଛି। ଆପୋଲୋ-୧୧ ଭଳି ଆମ ଯାନ ଭିତରେ ମଧ୍ୟ ଚନ୍ଦ୍ରକୁ ଯିବା ଆସିବା ଦୃଷ୍ଟିରୁ, କ୍ଷୁଦ୍ରାକୃତିରେ ସମସ୍ତ ପ୍ରୟୋଜନୀୟ ବସ୍ତୁ ପରିପୂର୍ଣ୍ଣ ହୋଇ ରହିଛି। ସେଥିରେ ଆଉ ଅଧିକ ବସ୍ତୁ ଯୋଗ କରିବା କିମ୍ବା କୌଣସି ବସ୍ତୁ ବିଯୋଗ କରିବାର ପ୍ରଶ୍ନ ମଧ୍ୟ ଉଠୁନାହିଁ। ତେଣୁ ତୁମ୍ଭେମାନେ, ତୁମର ପୁଡି ପୁଟୁଳା ଗୁଡିକ ଫୋପାଡି ଦେଇ ମୋ ସହିତ ଆସ।''

ପେଚା ମହାଶୟ, କାନ୍ଥରେ ଝୁଲୁଥିବା ଘଡି ଆଡ଼କୁ ଦୃଷ୍ଟି ପକାଇ, ହଠାତ୍ ବ୍ୟସ୍ତ ହୋଇ କହି ଉଠିଲେ,

''ଓ ହୋ!!....... ବହୁତ ଡ଼େରି ହୋଇଗଲା!! ଆପୋଲୋ-୧୧ ଓ ଆମ ଯାନଟିର ଭୂପୃଷ୍ଠ ତ୍ୟାଗ କରିବାର ସମୟ ହୋଇଗଲା। ବର୍ତ୍ତମାନ ଆମେ ବଡ଼ ଅସୁବିଧାରେ ପଡିଲୁ!! ଆମର ବ୍ୟୋମଚାରୀ ପୋଷାକ ଓ ଶିରାଭରଣ ଇତ୍ୟାଦି ପିନ୍ଧିବା ପାଇଁ ଆଦୌ ସମୟ ନାହିଁ! ତୁମ୍ଭେମାନେ ମୋ ସହିତ ଶୀଘ୍ର ଆସ। ଆମକୁ ଯାନ ମଧ୍ୟକୁ ଯିବାକୁ ହେବ।'' ଏପରି କହି ପେଚାମହାଶୟ, ଦ୍ରୁତ ପଦକ୍ଷେପରେ ଅଗ୍ରସର ହେଲେ। ମାଛ, ଠେକୁଆ ଓ କାଉ, ତିନିଜଣ ଅନିଚ୍ଛା ସତ୍ତ୍ୱେ, ସେମାନଙ୍କ ପୁଡା ପୁଟୁଳା ଗୁଡିକୁ ବାଧ୍ୟ ହୋଇ ଫୋପାଡି ଦେଇ ପେଚାମହାଶୟଙ୍କୁ ଅନୁସରଣ କଲେ। ସମୟ ଅଭାବରୁ ପଶୁପକ୍ଷୀ ତିନିଜଣ, ନିଜ ନିଜର ବ୍ୟୋମଚାରୀ ପୋଷାକ, ଶିରାଭରଣ, ଓ ଜୋତା ଇତ୍ୟାଦି ପିନ୍ଧି ନ ପାରି, ପେଚା ମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ ସେଗୁଡିକ ଓ ନିଜ ନିଜର ଜୀବନରକ୍ଷକପେଟି (Life Support system)ଟି ମାନ ହାତରେ ଧରି, ପେଚାମହାଶୟଙ୍କ ସହ ସେମାନଙ୍କ ରକେଟ ଯାନ ନିକଟକୁ ଯାତ୍ରା କଲେ ଓ ତା ମଧ୍ୟକୁ ପ୍ରବେଶ କଲେ। ଯାନଟି ବିବିଧ ଯନ୍ତ୍ରପାତିରେ ପୂର୍ଣ୍ଣ ଥିଲା। ରକେଟ୍ ନିୟନ୍ତ୍ରଣ କେନ୍ଦ୍ରର (Control Center) ନିର୍ଦ୍ଦେଶ କ୍ରମେ ଆପୋଲୋ-୧୧ ର ମହାକାଶଚାରୀ ତିନିଜଣ ଓ ପଶୁପକ୍ଷୀଙ୍କ ଯାନର ପେଚାମହାଶୟ ସେମାନଙ୍କର ଯାନ ମଧ୍ୟସ୍ଥ ଯନ୍ତ୍ରପାତି ସମୂହର କାର୍ଯ୍ୟକୁଶଳତା ଓ ଦୋଷତ୍ରୁଟୀ ପରୀକ୍ଷା କରିବାକୁ ଲାଗିଲେ।

ଯଥା ସମୟରେ ମହାକାଶ ଅଭିଯାନ ନିୟନ୍ତ୍ରଣ କେନ୍ଦ୍ର (Mission Control Center)ର ଗଣନା ଆରମ୍ଭ ହେଲା। ''ଦଶ....ନ...ଆଠ.....ସାତ'' ଇତ୍ୟାଦି ସଂଖ୍ୟାଗୁଡିକ ଗଣନା ଦ୍ୱାରା କ୍ରମାନ୍ୱୟରେ ହ୍ରାସ ହୋଇ ଶୂନ ଛୁଇଁଲା ମାତ୍ରେ ଆପୋଲୋ-୧୧ ଯାନର ନିମ୍ନଭାଗ ରକେଟ୍‌ରେ ଅଗ୍ନିସଂଯୋଗ ହୋଇ ଜଳି ଉଠିଲା ଓ ପ୍ରଚଣ୍ଡ ଘଡ଼ ଘଡ଼ ଶବ୍ଦ ସୃଷ୍ଟିକରି ନିମ୍ନ ଭାଗରୁ ପ୍ରଖର ଅଗ୍ନି ଓ ଶୁଭ୍ର ଧୂମ ସ୍ରୋତ ଉଦ୍‌ଗାର କରିବା ସହ ମଞ୍ଚ ତ୍ୟାଗ କଲା ଓ ଦ୍ରୁତ ଗତିରେ ଉପରକୁ ଉଠିଚାଲିଲା। ଆପୋଲୋ-୧୧ ଭଳି ପଶୁପକ୍ଷୀଙ୍କ କ୍ଷୁଦ୍ର ଯାନଟି କାର୍ଯ୍ୟକାରୀ ହୋଇ ଉର୍ଦ୍ଧ୍ୱଗାମୀ ହେବାକୁ ଲାଗିଲା। କିଛି କ୍ଷଣ ପରେ ଉର୍ଦ୍ଧ୍ୱାକାଶମୁଖୀ ଆପୋଲୋ-୧୧ ଯାନ ନିମ୍ନସ୍ଥ ପ୍ରଜ୍ୱଳିତ ଅଗ୍ନିଭାଗଟି ଦର୍ଶକ ମଣ୍ଡଳୀଙ୍କର ଦୃଷ୍ଟିଗୋଚ୍ଚର ହୋଇଥିଲା। ଯାନଟି ବହୁ ଉର୍ଦ୍ଧ୍ୱକୁ ଗତି କଲା ପରେ, ସେହି ଜ୍ୱଳନ୍ତ ଭାଗଟି ତଳକୁ ଖସି ପଡିଲା। ସେହିପରି ପୁଣି ଥରେ ଆପୋଲୋ-୧୧ର ନିମ୍ନଭାଗରୁ ବହିଷ୍କୃତ ଅଗ୍ନିମୟ ଅଂଶ ଭୂପୃଷ୍ଠକୁ ଖସି ପଡିବା ସହ, ଯାନଟି ଦର୍ଶକ ମଣ୍ଡଳୀର ଦୃଷ୍ଟି ପଥରୁ ଦୂରେଇ ଯାଇ ଧୀରେ ଧୀରେ ଅଦୃଶ୍ୟ ହୋଇଗଲା।

ମହାକାଶରେ, ଆପୋଲୋ-୧୧ ଯାନର ପାଖାପାଖି ପଶୁପକ୍ଷୀଙ୍କ କ୍ଷୁଦ୍ର ଯାନଟି ଉର୍ଦ୍ଧ୍ୱମୁଖୀ ହୋଇ ଛୁଟି ଚାଲିଥିଲା। ଦ୍ରୁତ ଗତିଶୀଳ, ଉର୍ଦ୍ଧ୍ୱଗାମୀ ବ୍ୟୋମଯାନସୃଷ୍ଟ ପ୍ରବଳ ଚାପର ଭାର ଯାନ ମଧ୍ୟସ୍ଥ ଅନଭ୍ୟସ୍ତ ବ୍ୟୋମଚାରୀ ତିନିଜଣ ଯଥା, କାଉ, ଠେକୁଆ ଓ ମାଛ ପାଇଁ ଅସହ୍ୟ ହୋଇ ଉଠିଥିଲା। ଚାପର ଭାରାରେ ସେମାନଙ୍କର ଓଜନ ଆଠଗୁଣ ବଢି ଯାଇଥିଲା। ସେମାନଙ୍କର ହାତ ଗୋଡ ସତେକି ଓଜନିଆ ସୀସା ଧାତୁରେ ତିଆରି ହୋଇଥିଲା ସେମିତି ଜଣାଗଲା। କିଛି ସମୟ ପରେ, ପଶୁପକ୍ଷୀଙ୍କ ଯାନଟି ପୃଥିବୀ ଉପରିସ୍ଥ ଆର୍ଥ ଅରବିଟ୍ (Earth's Orbit) ବା ପୃଥିବୀ ପରିକ୍ରମଣ ପଥରେ ପହଞ୍ଚିଲା ପରେ ତାର ଉର୍ଦ୍ଧ୍ୱଗତି ବନ୍ଦ କରି ଦିଆ ହେଲା। ଯାନଟି ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମଣ କରିବାକୁ ଆରମ୍ଭ କଲା। ଫଳରେ ପଶୁପକ୍ଷୀ ମହାକାଶଚାରୀ ତିନିଜଣ ଯାନର ଉର୍ଦ୍ଧ୍ୱଗତି ସୃଷ୍ଟ ଚାପର ଭାରାରୁ ମୁକ୍ତ ହୋଇ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ।

''ଜ୍ଞାନୀ ମହାଶୟ!!.......''ପେଚାମହାଶୟଙ୍କ ଉଦ୍ଦେଶ୍ୟରେ କାଉ କହି ଉଠିଲା, ''ଉର୍ଦ୍ଧ୍ୱଗାମୀ ରକେଟ୍ ଯାନ ମଧ୍ୟରେ ଯାତ୍ରା କରିବା ଅତି ଯନ୍ତ୍ରଣାଦାୟକ। ଆମ ଯାନଟି ଉର୍ଦ୍ଧ୍ୱକୁ ଗତି କରୁଥିବା ବେଳେ ମନେ ହେଲା ସତେ ଯେପରି ଏକ ବିରାଟ ପଥରଖଣ୍ଡ ମୋ ଛାତି ଓ ଦେହ ଉପରେ କିଏ ଲଦି ଦେଲା। ମୋର ନିଃଶ୍ୱାସ ବନ୍ଦ ହୋଇ ଛାତି ଫାଟି ଦେହର ହାଡ ମାଂସ ଚୂନା ହୋଇ ଚେୟାର୍ ସାଙ୍ଗରେ ମିଶିଯିବା ଭଳି ମନେ ହେଲା। ତା ଉପରେ ମୁଣ୍ଡରେ ଏକ ଷ୍ଟିଲ୍ ହାଣ୍ଡି ଘୋଡାଇ ରଖି କିଏ ଯେପରି ଟଣ୍ ଟଣ୍ କରି ପିଟି ଚାଲିଥିଲା ଭଳି ମନେ ହେଲା। ଉଃ ସେ ଟଣ ଟଣ ଶବ୍ଦ ଶୁଣି ଶୁଣି ମୋ ମୁଣ୍ଡ ଭିତରେ ଗୋଳମାଳ ହୋଇ ପାଗଳ ହୋଇଯିବା ଭଳି ମନେ ହେଲା।''

''ସୁବୋଧ ଭାଇ ସତ କହୁଛନ୍ତି! ଯାତ୍ରା କାଳରେ, ଆମେ ମଧ୍ୟ ସେପରି ଅନୁଭବ କଲୁ'' ମାଛ ଓ ଠେକୁଆ ପାଳି ଧରିଲା ଭଳି କହିଉଠିଲେ।

''ତାହା ଅବଶ୍ୟ ସତ୍ୟ'' ପେଚା ମହାଶୟ କହିଲେ, ''ଉର୍ଦ୍ଧ୍ୱଗାମୀ ଯାନ ମଧ୍ୟରେ ସେପରି ଗୁରୁଚାପ ଓ ଶବ୍ଦର ସୃଷ୍ଟି ଅବଶ୍ୟମ୍ଭାବୀ। କିନ୍ତୁ ଆମ୍ଭେମାନେ, ବ୍ୟୋମଚାରୀ ପୋଷାକପତ୍ର ଓ ଶିରାଭରଣ ଇତ୍ୟାଦି ଆବଶ୍ୟକୀୟ ପରିଧେୟ ବ୍ୟବହାର କରିଥିଲେ ଏସବୁ ଯନ୍ତ୍ରଣା ବହୁ ପରିମାଣରେ

ଯଥା ସମୟରେ ମହାକାଶ ଅଭିଯାନ ନିୟନ୍ତ୍ରଣ କେନ୍ଦ୍ର (Mission Control Center)ର ଗଣନା ଆରମ୍ଭ ହେଲା। "ଦଶ....ନ...ଆଠ.....ସାତ" ଇତ୍ୟାଦି ସଂଖ୍ୟାଗୁଡିକ ଗଣନା ଦ୍ୱାରା କ୍ରମାନ୍ୱୟରେ ହ୍ରାସ ହୋଇ ଶୂନ ଛୁଇଁଲା ମାତ୍ରେ ଆପୋଲୋ-୧୧ ଯାନର ନିମ୍ନଭାଗ ରକେଟ୍‌ରେ ଅଗ୍ନିସଂଯୋଗ ହୋଇ ଜଳି ଉଠିଲା ଓ ପ୍ରଚଣ୍ଡ ଘଡ଼ ଘଡ଼ ଶବ୍ଦ ସୃଷ୍ଟିକରି ନିମ୍ନ ଭାଗରୁ ପ୍ରଖର ଅଗ୍ନି ଓ ଶୁଭ୍ର ଧୂମ ସ୍ରୋତ ଉଦ୍‌ଗାର କରିବା ସହ ମଞ୍ଚ ତ୍ୟାଗ କଲା ଓ ଦ୍ରୁତ ଗତିରେ ଉପରକୁ ଉଠିଚାଲିଲା। ଆପୋଲୋ-୧୧ ଭଳି ପଶୁପକ୍ଷୀଙ୍କ କ୍ଷୁଦ୍ର ଯାନଟି କାର୍ଯ୍ୟକାରୀ ହୋଇ ଊର୍ଦ୍ଧ୍ୱଗାମୀ ହେବାକୁ ଲାଗିଲା। କିଛି କ୍ଷଣ ପରେ ଊର୍ଦ୍ଧ୍ୱାକାଶମୁଖୀ ଆପୋଲୋ-୧୧ ଯାନ ନିମ୍ନସ୍ଥ ପ୍ରଜ୍ୱଳିତ ଅଗ୍ନିଭାଗଟି ଦର୍ଶକ ମଣ୍ଡଳୀଙ୍କର ଦୃଷ୍ଟିଗୋଚର ହୋଇଥିଲା। ଯାନଟି ବହୁ ଊର୍ଦ୍ଧ୍ୱକୁ ଗତି କଲା ପରେ, ସେହି ଜ୍ୱଳନ୍ତ ଭାଗଟି ତଳକୁ ଖସି ପଡିଲା। ସେହିପରି ପୁଣି ଥରେ ଆପୋଲୋ-୧୧ର ନିମ୍ନଭାଗରୁ ବହିସ୍କୃତ ଅଗ୍ନିମୟ ଅଂଶ ଭୂପୃଷ୍ଠକୁ ଖସି ପଡିବା ସହ, ଯାନଟି ଦର୍ଶକ ମଣ୍ଡଳୀର ଦୃଷ୍ଟି ପଥରୁ ଦୂରେଇ ଯାଇ ଧୀରେ ଧୀରେ ଅଦୃଶ୍ୟ ହୋଇଗଲା।

ମହାକାଶରେ, ଆପୋଲୋ-୧୧ ଯାନର ପାଖାପାଖି ପଶୁପକ୍ଷୀଙ୍କ କ୍ଷୁଦ୍ର ଯାନଟି ଊର୍ଦ୍ଧ୍ୱମୁଖୀ ହୋଇ ଛୁଟି ଚାଲିଥିଲା। ଦ୍ରୁତ ଗତିଶୀଳ, ଊର୍ଦ୍ଧ୍ୱଗାମୀ ବ୍ୟୋମଯାନସୃଷ୍ଟ ପ୍ରବଳ ଚାପର ଭାର ଯାନ ମଧ୍ୟସ୍ଥ ଅନଭ୍ୟସ୍ତ ବ୍ୟୋମଚାରୀ ତିନିଜଣ ଯଥା, କାଉ, ଠେକୁଆ ଓ ମାଛ ପାଇଁ ଅସହ୍ୟ ହୋଇ ଉଠିଥିଲା। ଚାପର ଭାରାରେ ସେମାନଙ୍କର ଓଜନ ଆଠଗୁଣ ବଢି ଯାଇଥିଲା। ସେମାନଙ୍କର ହାତ ଗୋଡ ସତେକି ଓଜନିଆ ସୀସା ଧାତୁରେ ତିଆରି ହୋଇଥିଲା ସେମିତି ଜଣାଗଲା। କିଛି ସମୟ ପରେ, ପଶୁପକ୍ଷୀଙ୍କ ଯାନଟି ପୃଥିବୀ ଉପରିସ୍ଥ ଆର୍ଥ ଅରବିଟ୍ (Earth's Orbit) ବା ପୃଥିବୀ ପରିକ୍ରମଣ ପଥରେ ପହଞ୍ଚିଲା ପରେ ତାର ଊର୍ଦ୍ଧ୍ୱଗତି ବନ୍ଦ କରି ଦିଆ ହେଲା। ଯାନଟି ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମଣ କରିବାକୁ ଆରମ୍ଭ କଲା। ଫଳରେ ପଶୁପକ୍ଷୀ ମହାକାଶଚାରୀ ତିନିଜଣ ଯାନର ଊର୍ଦ୍ଧ୍ୱଗତି ସୃଷ୍ଟ ଚାପର ଭାରାରୁ ମୁକ୍ତ ହୋଇ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ।

"ଜ୍ଞାନୀ ମହାଶୟ!!......."ପେଚାମହାଶୟଙ୍କ ଉଦ୍ଦେଶ୍ୟରେ କାଉ କହି ଉଠିଲା, "ଊର୍ଦ୍ଧ୍ୱଗାମୀ ରକେଟ୍ ଯାନ ମଧ୍ୟରେ ଯାତ୍ରା କରିବା ଅତି ଯନ୍ତ୍ରଣାଦାୟକ। ଆମ ଯାନଟି ଊର୍ଦ୍ଧ୍ୱକୁ ଗତି କରୁଥିବା ବେଳେ ମନେ ହେଲା ସତେ ଯେପରି ଏକ ବିରାଟ ପଥରଖଣ୍ଡ ମୋ ଛାତି ଓ ଦେହ ଉପରେ କିଏ ଲଦି ଦେଲା। ମୋର ନିଃଶ୍ୱାସ ବନ୍ଦ ହୋଇ ଛାତି ଫାଟି ଦେହର ହାଡ ମାଂସ ଚୁନା ହୋଇ ଚେୟାର୍ ସାଙ୍ଗରେ ମିଶିଯିବା ଭଳି ମନେ ହେଲା। ତା ଉପରେ ମୁଣ୍ଡରେ ଏକ ଷ୍ଟିଲ୍ ହାଣ୍ଡି ଘୋଡାଇ ରଖି କିଏ ଯେପରି ଟଣ୍ ଟଣ୍ କରି ପିଟି ଚାଲିଥିଲା ଭଳି ମନେ ହେଲା। ଉଃ ସେ ଟଣ ଟଣ ଶବ୍ଦ ଶୁଣି ଶୁଣି ମୋ ମୁଣ୍ଡ ଭିତରେ ଗୋଳମାଳ ହୋଇ ପାଗଳ ହୋଇଯିବା ଭଳି ମନେ ହେଲା।"

"ସୁବୋଧ ଭାଇ ସତ କହୁଛନ୍ତି। ଯାତ୍ରା କାଳରେ, ଆମେ ମଧ୍ୟ ସେପରି ଅନୁଭବ କଲୁ" ମାଛ ଓ ଠେକୁଆ ପାଳି ଧରିଲା ଭଳି କହିଉଠିଲେ।

"ତାହା ଅବଶ୍ୟ ସତ୍ୟ" ପେଚା ମହାଶୟ କହିଲେ, "ଊର୍ଦ୍ଧ୍ୱଗାମୀ ଯାନ ମଧ୍ୟରେ ସେପରି ଗୁରୁଚାପ ଓ ଶବ୍ଦର ସୃଷ୍ଟି ଅବଶ୍ୟମ୍ଭାବୀ। କିନ୍ତୁ ଆମ୍ଭେମାନେ, ବ୍ୟୋମଚାରୀ ପୋଷାକପତ୍ର ଓ ଶିରାଭରଣ ଇତ୍ୟାଦି ଆବଶ୍ୟକୀୟ ପରିଧେୟ ବ୍ୟବହାର କରିଥିଲେ ଏସବୁ ଯନ୍ତ୍ରଣା ବହୁ ପରିମାଣରେ




ଚନ୍ଦ୍ରାଭିଯାନ ଉଦ୍ଦେଶ୍ୟରେ ଆପୋଲୋ-୧୧ ମହାକାଶ ଯାନର ଭୂପୃଷ୍ଠ ତ୍ୟାଗ (ପୃଷ୍ଠା ୧୬)



ମାଧ୍ୟାକର୍ଷଣ ଶକ୍ତିର ପରିମାଣ କମ ଯୋଗୁଁ ମହାକାଶ ଯାନ ମଧ୍ୟରେ ଓଜନହୀନ ଭାସମାନ ଅବସ୍ଥା (ପୃଷ୍ଠା ୧୯)

ହ୍ରାସ ପାଇ ଥାଆନ୍ତା । କିନ୍ତୁ ସମୟର ଅଭାବରୁ ତାହା ସମ୍ଭବପର ହେଲା ନାହିଁ।''

ପଶୁପକ୍ଷୀଙ୍କ ଯାନଟି ପୃଥିବୀର ଚତୁର୍ଦ୍ଦିଗରେ ଘୂରି ବୁଲୁଥିଲା । କାଉ, ମାଛ ଓ ଠେକୁଆ ଆଗ୍ରହ ଓ ଉଦ୍‌ବେଗ ଭରା ହୃଦୟରେ ଯାନ ସଂଲଗ୍ନ କାଚ ଝରକା ମଧ୍ୟ ଦେଇ ଭୂପୃଷ୍ଠର ଦୃଶ୍ୟାବଳି ଉପଭୋଗ କରି ଚାଲିଲେ । ପେଚା ମହାଶୟ ପୃଥିବୀ ଉର୍ଦ୍ଧ୍ୱର ଅଭିନବ ଦୃଶ୍ୟ ଗୁଡ଼ିକ ଦେଖିବା ସହ ନିଜ କ୍ୟାମେରାରେ ଫୋଟୋ ଉଠାଇବାରେ ଲାଗିଗଲେ ।

ହଠାତ୍ ନିସ୍ତବ୍ଧତା ଭଙ୍ଗ କରି ମାଛ ପାଟି କରି କହି ଉଠିଲା-- ''ଦେ....ଦେ....ଦେଖ । ଭୂ....ଭୂ....ଭୂତ !!'' ମାଛର ପାଟି ଖନି ମାରିଗଲା । ସମସ୍ତେ ବହିର୍ଭାଗରୁ ଦୃଷ୍ଟି ଫେରାଇ ମାଛ ଆଡକୁ ଚାହିଁଲେ । ଦେଖିଲେ ଯାନ ଭିତରେ ଶୂନ୍ୟରେ ଉଡିବୁଲୁଥିବା ଏକ ଚଷମା ଆଡକୁ ଚାହିଁ ରହି, ମାଛ ଭୟରେ ବରଡା ପତ୍ର ଭଳି ଥର ଥର କମ୍ପୁଥିଲା । ଠେକୁଆ ଓ କାଉ ଦୁହେଁ ଉଡିବୁଲୁଥିବା ଚଷମା ଆଡେ ବଡ ବଡ ଆଖି କରି ଚାହିଁ ରହିଲେ ।

''ଏ ତ ମୋ ସ୍ୱର୍ଗବାସୀ, ବୁଢ଼ୀମାର ଚଷମା ଭଳି ଦିଶୁଛି !!'' ଥଙ୍ଗେଇ ଥଙ୍ଗେଇ ଠେକୁଆ କହି ପକାଇଲା । ''ତାର ଆତ୍ମା ଏ ଯାନ ଭିତରକୁ ପଶି ଆସିଛି। ମୋ ଦେହ ତ କାକର ପାଣି ହୋଇଗଲାଣି । ଓଃ.....ମୋର ଚେତା ବୁଡିଯିବା ଭଳି ଲାଗିଲାଣି....ମୁଁ କଣ କରିବି, ଜାଣିପାରୁନି''।

କାଉ, ଫିସ୍ ଫିସ୍ କରି ମାଛର କାନ ପାଖରେ କହିବାକୁ ଲାଗିଲା-- ''ଏହା ନିଶ୍ଚୟ ଅଦୃଶ୍ୟମାନବର (Invisible man) କାରସାଦୀ । ମାନବ ବୈଜ୍ଞାନିକ ଉପାୟରେ ନିଜକୁ ଛୋଟ ଓ ଅଦୃଶ୍ୟ କରି, ଆମ ଯାନ ମଧ୍ୟକୁ ପ୍ରବେଶ କରିଛି । ସେ ଆମ୍ଭମାନଙ୍କୁ ହତ୍ୟା କରି ଆମ ପଶୁପକ୍ଷୀଙ୍କ ଚନ୍ଦ୍ରାଭିଯାନକୁ ବିଫଳ କରିଦେଇ ଅପ୍ରତିଦ୍ୱନ୍ଦୀ ଚନ୍ଦ୍ରବିଜୟୀ ହେବ।''

ପେଚା ମହାଶୟ, ମାଛ, କାଉ, ଓ ଠେକୁଆର ବ୍ୟବହାର ଦେଖି ସାମାନ୍ୟ ହସି ସହଜ ସ୍ୱରରେ କହିଲେ-- ''ଏପରି ଭୌତିକ ଘଟଣା ତୁମ୍ଭେମାନେ ମହାଶୂନ୍ୟରେ ବହୁତ ଦେଖିବାକୁ ପାଇବ ।''

''ଏଁ ...ଭୌତିକ ଘଟଣା !!'' କାଉ ଆତଙ୍କିତ ହୋଇ କହି ଉଠିଲା-- ''ଜ୍ଞାନୀ ମହାଶୟ !!..... କି ପ୍ରକାରର ଭୂତପ୍ରେତ ଏ ମହାଶୂନ୍ୟକୁ ଘେରି ରହିଛନ୍ତି ? ପ୍ରଭୂହୋ !..... କି ବିପଦ !! ସେମାନେ ଆମ୍ଭମାନଙ୍କୁ ଘେରି ଭୟ ଦେଖାଇବେ ଓ ଶେଷରେ ଆମ୍ଭମାନଙ୍କର ପ୍ରାଣ ନାଶ କରିବେ । ବର୍ତ୍ତମାନ ଆମେ କି ଉପାୟ କରିବା ?....''

ପେଚାମହାଶୟ, ପଶୁପକ୍ଷୀଙ୍କ ଏ ଆଚରଣକୁ ମଉଜ ମଜଲିସ୍ ପାଇଁ ଏକ ଅଭିନୟ କରୁଛନ୍ତି ବୋଲି ଭାବି ନେଲେ । ତେଣୁ ସେ ହସି କହିଲେ, ''ଏଇ ଦେଖ, ...... ତୁମର ମଉଜ ମଜଲିସ୍‌କୁ ଦ୍ୱିଗୁଣିତ କରିଦେବା ପାଇଁ ମୁଁ ମୋ ପକେଟ୍‌ରୁ ଏ କଲମଟି ଛାଡି ଦେବି। ତାହା ମଧ୍ୟ ମୋ ଚଷମା ଭଳି ଯାନ ମଧ୍ୟରେ ଭାସି ବୁଲିବ।'' ଏପରି କହି ପେଚାମହାଶୟ ନିଜ ପକେଟରୁ କଲମଟି ବାହାର କରି ଛାଡିଦେଲେ। ସତକୁ ସତ କଲମଟି ମଧ୍ୟ ଚଷମା ଭଳି ଯାନ ମଧ୍ୟରେ ଭାସି ବୁଲିଲା । ପଶୁପକ୍ଷୀ ତିନିଜଣ ଏପରି ଅଦ୍ଭୁତ ଘଟଣା ଦେଖି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ।

''ଅତି ଚମତ୍କାର ମେଜିକ୍ ଦେଖାଉଛନ୍ତି ଆପଣ !!'' ଠେକୁଆ ଆଶ୍ୱସ୍ତ ହୋଇ ପେଚା ମହାଶୟଙ୍କ ଉଦ୍ଦେଶ୍ୟରେ କହିଲା, ''ପ୍ରଥମେ ଆପଣ ଚଷମା ଓ ତାପରେ କଲମକୁ ଶୂନ୍ୟରେ ଭସାଇ ରଖିଦେଲେ । ଆପଣ ବାସ୍ତବିକ୍ ଏକ ଉଚ୍ଚକୋଟୀର ଯାଦୁକର''! ଠେକୁଆ ପେଚାମହାଶୟଙ୍କୁ ପ୍ରଶଂସା କରି

କହିଲା, ''ଆପଣ ପ୍ରଥମରୁ କାହିଁକି ଆମ୍ଭମାନଙ୍କୁ କହି ନଥିଲେ ଯେ ଆପଣ ଏକ ଯାଦୁକର ମଧ୍ୟ ଓ ଆମ୍ଭମାନଙ୍କର ଆମୋଦ ପ୍ରମୋଦ ପାଇଁ ଯାନ ମଧ୍ୟରେ ମ୍ୟାଜିକ୍ ପ୍ରଦର୍ଶନ କରିବେ ?''

''ନା......ନା....ମୁଁ ଯାଦୁକର ନୁହେଁ କିମ୍ବା ଏ ସବୁ ଘଟଣାର ପଛରେ କୌଣସି ମ୍ୟାଜିକ୍ ବା ଭୋଜବିଦ୍ୟାର କରାମତି ନାହିଁ। ମହାଶୂନ୍ୟରେ ଏହା ଅତି ସାଧାରଣ ଓ ସ୍ୱାଭାବିକ ଘଟଣା। ଏଠି ମହାକାଶରେ, ଯେ କୌଣସି ପ୍ରାଣୀ ବିନା ଚେଷ୍ଟାରେ ଏପରି କୁହୁକ ବିଦ୍ୟା ଦେଖାଇ ପାରିବ। ତୁମ୍ଭେମାନେ ପ୍ରକୃତରେ କଣ ବୁଝି ପାରୁନାହଁ ଯେ ଏଠି ଏସବୁ ଘଟଣା କିପରି ସମ୍ଭବ ହେଉଛି ?'' ଆଶ୍ଚର୍ଯ୍ୟ ହୋଇ ପେଚା ମହାଶୟ ପ୍ରଶ୍ନକଲେ।

''ନା....ନା.....ଆମ୍ଭେମାନେ ପ୍ରକୃତରେ କିଛି ବୁଝି ପାରୁନାହୁଁ, ଏ ସବୁ ଜିନିଷ ଯାନ ମଧ୍ୟରେ କିପରି ଭାସି ବୁଲୁଛି ?'' ମାଛ, କୁଆ ଓ ଠେକୁଆ ସମସ୍ୱରରେ କହି ଉଠିଲେ।

ପେଚାମହାଶୟ ବ୍ୟସ୍ତ ହୋଇ ଉଠି ପଚାରିଲେ, ''ତୁମ୍ଭମାନଙ୍କର ଏ ଚନ୍ଦ୍ରଯାତ୍ରା ପୂର୍ବରୁ ମହାକାଶ ଓ ଚନ୍ଦ୍ର ଅଭିଯାନ ସମ୍ବନ୍ଧରେ କି କି ଶିକ୍ଷା ଦିଆଯାଇଛି ମତେ କୁହ। ମୁଁ ଜାଣିବାକୁ ଚାହେଁ।''

''ନିଶ୍ଚୟ..... ଆମକୁ ସେ ସବୁ ବିଷୟରେ ବହୁତ କିଛି ଶିକ୍ଷା ଦିଆଯାଇଛି। ଆମେ କହିବୁ, ଶୁଣନ୍ତୁ'' ମାଛ ଆଗଭର ହୋଇ କହି ପକାଇଲା। ''ପ୍ରଥମରୁ, ଚନ୍ଦ୍ରପୃଷ୍ଠରେ କୌଣସି ଖାଦ୍ୟ ପେୟ ଗ୍ରହଣ କରିବାକୁ ଆମକୁ ବାରଣ କରାଯାଇଛି। କାରଣ, କିଏ ଜାଣେ ସେ ଖାଦ୍ୟପେୟରେ କି ପ୍ରକାରର ରୋଗ ଜୀବାଣୁ ପ୍ରଚ୍ଛନ୍ନ ଭାବେ ରହିଥିବେ ? ଆମେ ତାହା ଖାଇବା ପରେ ଅଜଣା ରୋଗରେ ଆକ୍ରାନ୍ତ ହେବୁ ଓ ଆମ ଜୀବନ ସଂକଟାପନ୍ନ ହେବ। ସେଥିପାଇଁ ସିଦ୍ଧ ଖାଦ୍ୟ ପାନୀୟ ବ୍ୟବହାର କରିବା ପାଇଁ କଡା ଆଦେଶ ଦିଆଯାଇଛି। ଦ୍ୱିତୀୟରେ ଚନ୍ଦ୍ରବାସୀଙ୍କ ସହ ଆଳାପ ଓ ଭାବର ଆଦାନ ପ୍ରଦାନ କରିବା ପାଇଁ ଆମେ ସମସ୍ତେ କିଛି କିଛି ଜର୍ମାନ, ଫ୍ରେନ୍‌ଚ, ଚାଇନିଜ୍, ଆରବିକ୍, ଜାପାନିଜ୍ ଭାଷାଗୁଡିକ ସହ ପୁରାତନ ଲାଟିନ୍, ଦେବନାଗରୀ ଓ ସଂସ୍କୃତ ଭାଷା ଗୁଡିକ ମଧ୍ୟ ଶିକ୍ଷା କରିଛୁ। ଏତେ ଗୁଡିଏ ଭାଷାରୁ ଅନ୍ତତଃ ଗୋଟିଏ ଭାଷା ତ ଚନ୍ଦ୍ରବାସୀ ବୁଝିବାକୁ ସକ୍ଷମ ହେବେ !! କିଛି ନ ହେଲେ ଆମେ ଠାରାଠାରି କରି ସାଙ୍କେତିକ ଭାଷାରେ କାମ ଚଳାଇ ନେବୁ। ଯେପରି, ଭୋକ କଲେ ପେଟ ଦେଖାଇବୁ। ନିଦ ମାଡିଲେ ଆଖି ବୁଜି ଶୋଇବା ଭଳି ଅଭିନୟ କରି ଦେଖାଇବୁ ଇତ୍ୟାଦି। ଏହାଛଡା ସହାସ୍ୟ ମୁଖରେ ଚନ୍ଦ୍ରବାସୀଙ୍କ ସହ ନମ୍ର ଓ ଭଦ୍ର ବ୍ୟବହାର କରିବୁ। ଆମ ଭଳି ଜୀବଜନ୍ତୁ ଥିଲେ ସେମାନଙ୍କ ସହିତ କିପରି ବନ୍ଧୁତା ସ୍ଥାପନ କରିବୁ ସେ ବିଷୟରେ ମଧ୍ୟ ଶିକ୍ଷା ପାଇଛୁ। ଚନ୍ଦ୍ରପୃଷ୍ଠରେ ଶତ୍ରୁ ଆକ୍ରମଣରୁ ନିଜକୁ ରକ୍ଷା କରିବାକୁ ଆମେ ଯୁଡୋ (Judo), କରାଟି (Karate) ଇତ୍ୟାଦି ଜାପାନିଜ୍ ଆତ୍ମରକ୍ଷା କଳାକୌଶଳ ଶିକ୍ଷାକରି ଧୂରନ୍ଧର ହୋଇଛୁ। କାରଣ ଆମେ ଆତ୍ମରକ୍ଷା ପାଇଁ ଛୁରୀ ଓ ବନ୍ଧୁକ ଇତ୍ୟାଦି ମାରଣାସ୍ତ୍ର ବ୍ୟବହାରର ବିରୁଦ୍ଧରେ। ଏସବୁ ବିଫଳ ହେଲେ, ଆତ୍ମରକ୍ଷା ଉଦ୍ଦେଶ୍ୟରେ ଆମେ ନିଃଶ୍ୱାସ ବନ୍ଦ କରି, ଆଖି ତରାଟି ମଲାଙ୍କ ଭଳି ପଡି ରହିବାର ଛଳନା କରିବା ମଧ୍ୟ ଶିକ୍ଷା କରିଛୁ।''

''ବାସ୍......ବାସ୍.....ବହୁତ ହୋଇଗଲା'' ପେଚାମହାଶୟ ଅଧୈର୍ଯ୍ୟ ହୋଇ କହି ପକାଇଲେ, ''ତୁମ୍ଭମାନଙ୍କ ଚନ୍ଦ୍ରାଭିଯାନର ପୂର୍ବତନ ଶିକ୍ଷାଦୀକ୍ଷାର ସମ୍ପୂର୍ଣ୍ଣ ବିବରଣୀ ମତେ ମିଳିଗଲା। ଧନ୍ୟରେ ଭାଗ୍ୟ !!'' ମୁଣ୍ଡରେ ହାତ ଦେଇ ନୈରାଶ୍ୟଭରା ସ୍ୱରରେ ପେଚାମହାଶୟ କହିବାକୁ ଲାଗିଲେ,

''ମୋରି କପାଳରେ ଥିଲା, ତୁମ ତିନିଜଣ ପଣ୍ଡିତ ବ୍ୟୋମଚାରୀଙ୍କ ସହଯାତ୍ରୀ ହୋଇ ଚନ୍ଦ୍ର ବିଜୟ କରିବାକୁ? ତୁମ୍ଭେମାନେ ବ୍ୟୋମଚାରୀ ରୂପେ ନିଯୁକ୍ତ ହୋଇଛ ଅଥଚ ମହାକାଶ କିମ୍ବା ଚନ୍ଦ୍ରାଭିଯାନ ସମ୍ବନ୍ଧୀୟ କୌଣସି ଜ୍ଞାନ ତୁମ୍ଭମାନଙ୍କର ନାହିଁ କିମ୍ବା କୌଣସି ଶିକ୍ଷା ମଧ୍ୟ ଦିଆଯାଇନାହିଁ? ମହାବିପଦରେ ମୁଁ ପଡିଲି! ତୁମ ତିନିଜଣ ଅଜ୍ଞ ବ୍ୟୋମଚାରୀଙ୍କ ସହ ଏ ଚନ୍ଦ୍ର ବିଜୟ ସଫଳ କରିବା ଆଶା ଏକ ବିଡମ୍ବନା ମାତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ। ଆମ୍ଭମାନଙ୍କର ଏ ଚନ୍ଦ୍ରାଭିଯାନର ବିଫଳତା ସୁନିଶ୍ଚିତ।''

ପେଚାମହାଶୟ କିଛିକ୍ଷଣ ପାଇଁ ଗଭୀର ଚିନ୍ତାମଗ୍ନ ହୋଇ ରହିଲେ। ତାଙ୍କର ସେପରି ଅବସ୍ଥା ଦେଖି ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ କଣ କରିବେ ଜାଣିନପାରି ଅପରାଧୀଙ୍କ ଭଳି ଚୁପ୍ ହୋଇ ବସି ରହିଲେ।

କିଛି ସମୟ ପରେ ନିସ୍ତବ୍ଧତା ଭଙ୍ଗ କରି ପେଚା ମହାଶୟ ଆରମ୍ଭ କଲେ।

''ତୁମ୍ଭମାନଙ୍କ ପ୍ରତି ମୋର ସେପରି ଆଚରଣ ଅକ୍ଷମଣୀୟ। ମୁଁ ପ୍ରକୃତରେ ମୋ ବ୍ୟବହାର ପାଇଁ ଅତ୍ୟନ୍ତ ଲଜ୍ଜିତ। ମତେ କ୍ଷମା କରିଦେବ। ତୁମ୍ଭମାନଙ୍କୁ ଦୋଷ ଦେବା ପୂର୍ବରୁ ମୁଁ ନିଜକୁ ଦୋଷୀ ମାନୁଛି। କାରଣ ମୋର ଏହା ଜାଣିବା ଉଚିତ ଥିଲା ଯେ, ଜଙ୍ଗଲ ମଧ୍ୟରେ ବ୍ୟୋମଚାରୀଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ତାଲିମ୍ କରିବାର ସୁବ୍ୟବସ୍ଥା ଆଦୌ ନାହିଁ। ଏହା ଜାଣି, ତୁମ୍ଭମାନଙ୍କର ତାଲିମ୍ ପାଇଁ ବିଶେଷ ବନ୍ଦୋବସ୍ତ କରିବା ମୋର କର୍ତ୍ତବ୍ୟ ଥିଲା। କିନ୍ତୁ ମୁଁ ସେଥିପ୍ରତି ଧ୍ୟାନ ନ ଦେଇ ବଡ଼ ଭୁଲ୍ କରିଛି। ଫଳରେ ଏପରି ବିଷମ ସମସ୍ୟା ସମ୍ମୁଖରେ ଉପସ୍ଥିତ ହେଲା। ଏହାର ସମାଧାନର କୌଣସି ସହଜ ଉପାୟ ମଧ୍ୟ ନାହିଁ। ତଥାପି, ମୋର ବିଚାରରେ ଏ ସମସ୍ୟା ସମାଧାନର କେବଳ ଦୁଇଟି ଉପାୟ ଅଛି। ପ୍ରଥମଟି ହେଲା, ଚନ୍ଦ୍ର ବିଜୟୀ ହେବାର ଆଶା ବର୍ଜନ କରି ଏହି ସ୍ଥାନରୁ ଭୂପୃଷ୍ଠକୁ ପ୍ରତ୍ୟାବର୍ତ୍ତନ କରିବା। ଦ୍ୱିତୀୟଟି ହେଲା, ଆଶାବାଦୀ ହୋଇ ସମସ୍ତ ବାଧାବିଘ୍ନ ମଧ୍ୟ ଦେଇ ଚନ୍ଦ୍ରାଭିଯାନ ସଫଳ କରିବା ଦିଗରେ ଚେଷ୍ଟା କରିବା। ଏ ଦ୍ୱିତୀୟ ପନ୍ଥାଟି ଅତି କଠିଣ ସତ କିନ୍ତୁ ମୋ ମତରେ, ଏ ଦ୍ୱିତୀୟ ପନ୍ଥା ଅବଲମ୍ବନ କରି ଦୃଢସଂକଳ୍ପ ଭାବେ ଧୈର୍ଯ୍ୟ ରଖି ସମସ୍ତେ ଏକତ୍ର କାର୍ଯ୍ୟ କଲେ, ଏ ଚନ୍ଦ୍ରାଭିଯାନ ସଫଳ ହେବାର ସମ୍ଭାବନା ଅଛି। ତେଣୁ ଏ ଦୁଇଟି ପନ୍ଥାରୁ କେଉଁଟି ଅନୁସରଣ କରିବାକୁ ଇଚ୍ଛା କରୁଛ ତାହା ତୁମ୍ଭେମାନେ ସ୍ଥିର କର।'' ପେଚାମହାଶୟ ନୀରବ ରହିଲେ।

''ଆମ୍ଭେମାନେ ଆପଣଙ୍କର ଦ୍ୱିତୀୟ ପନ୍ଥାଟିକୁ ସମର୍ଥନ କରୁଛୁ। ସବୁ ପ୍ରକାର ବାଧାବିଘ୍ନ ମଧ୍ୟ ଦେଇ ଏ ଚନ୍ଦ୍ରାଭିଯାନ ସଫଳ କରିବା ଦିଗରେ ଆମେ ଚେଷ୍ଟା କରିବାକୁ ପ୍ରସ୍ତୁତ ଅଛୁ।'' କାଉ, ଠେକୁଆ ଓ ମାଛ ତିନିଜଣ ଉଚ୍ଚସ୍ୱରରେ କହି ଉଠିଲେ।

''ଠିକ୍ ଅଛି। ମୁଁ ମଧ୍ୟ ତୁମ ସହିତ ଏକମତ'' ପେଚାମହାଶୟ କହିଲେ। ମୋର ମଧ୍ୟ ଏକ ସର୍ତ୍ତ ଅଛି। ତାହା ତୁମ ସମସ୍ତଙ୍କୁ ପାଳନ କରିବାକୁ ପଡିବ। ତାହାହେଲେ, ବର୍ତ୍ତମାନଠାରୁ ଆରମ୍ଭ କରି ଚନ୍ଦ୍ରାଭିଯାନ ଶେଷ କରି ପୃଥିବୀ ପ୍ରତ୍ୟାବର୍ତ୍ତନ କରିବା ଯାଏ ମୁଁ ତୁମର ଶିକ୍ଷକ, ଉପଦେଷ୍ଟା ଓ ଅନୁମୋଦନକାରୀର ଆସନ ଗ୍ରହଣ କରିବି ଓ ତୁମ୍ଭେ ସମସ୍ତେ ବାଧ୍ୟଛାତ୍ରଙ୍କ ଭଳି ନିଷ୍ଠାର ସହ ମୋଠାରୁ ଶିକ୍ଷା ଲାଭ କରି, ମୋ ଉପଦେଶ ଅନୁଯାୟୀ ଓ ସମ୍ମତି କ୍ରମେ କାର୍ଯ୍ୟ କରିବ। ମୋର ଅନୁମତି ବିନା, ତୁମ୍ଭ ମଧ୍ୟରୁ ଜଣେ ବି କେହି, ଇଚ୍ଛା ଅନୁସାରେ କୌଣସି

କାର୍ଯ୍ୟ କରିବାକୁ ଉଦ୍‌ଯୋଗ କରିବ ନାହିଁ। ମୋ ସହିତ ତୁମ୍ଭେମାନେ ଯଦି ଏକମତ ତେବେ ମୁଁ ମୋ କାମ କରିବି।'' ପେଚାମହାଶୟ କହିବା ଶେଷ କଲେ।

''ଆମେ ସମସ୍ତେ ଆପଣଙ୍କ ସହ ଏକମତ। ଆପଣ କହିବା ଅନୁଯାୟୀ କାର୍ଯ୍ୟ କରିବୁ'' ପଶୁପକ୍ଷୀ ତିନିଜଣ ସମ୍ମତି ଜଣାଇଲେ।

''ବର୍ତ୍ତମାନ ତୁମେ ସମସ୍ତେ ଏକ ମନ ହୋଇ ଶୁଣ,'' ପେଚାମହାଶୟ ଆରମ୍ଭ କଲେ, ''ମୁଁ ତୁମ୍ଭମାନଙ୍କୁ ମୋ ଚଷମା ଓ କଲମର ଏପରି ଓଜନହୀନ ଭାସମାନ ଅବସ୍ଥାର କାରଣ କହିବି। ଏ ଦୁଇଟି ବସ୍ତୁ, ଯାନ ମଧ୍ୟରେ ଏପରି ଭାସି ବୁଲିବାର କାରଣ ହେଲା, ମାଧ୍ୟାକର୍ଷଣ ଶକ୍ତିର (Gravity) ଅନୁପସ୍ଥିତି। ବୈଜ୍ଞାନିକମାନେ ଏହାକୁ 'ମାଇକ୍ରୋ ଗ୍ରାଭିଟି' (Micro Gravity) କିମ୍ବା 'ଶୂନ୍ୟ-ଗ୍ରାଭିଟି' (Zero Gravity) କହିଥାଆନ୍ତି। ଏହି ଶକ୍ତି (Gravity) ବିଶ୍ୱର କ୍ଷୁଦ୍ରାତିକ୍ଷୁଦ୍ର କଣିକାଠାରୁ ଆରମ୍ଭ କରି ବିରାଟକାୟ ବସ୍ତୁ ପର୍ଯ୍ୟନ୍ତ ସମସ୍ତ ପଦାର୍ଥ ମଧ୍ୟରେ ନିହିତ ଅଛି। ଏହି ଶକ୍ତିଦ୍ୱାରା ସମସ୍ତ ପଦାର୍ଥ ପରସ୍ପରକୁ ନିଜ ନିଜର କେନ୍ଦ୍ର (Center) ଆଡ଼କୁ ଆକର୍ଷଣ କରନ୍ତି। ବସ୍ତୁର ଆକାର (Size) ଓ ଘନତା (Mass) ଅନୁଯାୟୀ ଏହି ମାଧ୍ୟାକର୍ଷଣ ଶକ୍ତିର ପରିମାଣ କମ ବେଶୀ ହୋଇଥାଏ। ବଡ଼ ଓ ଓଜନିଆ ପଦାର୍ଥର ଆକର୍ଷଣଶକ୍ତି ଛୋଟ ଓ ହାଲୁକା ପଦାର୍ଥର ଆକର୍ଷଣଶକ୍ତି ଅପେକ୍ଷା ଅଧିକ ହୋଇଥାଏ। ଏହି ମାଧ୍ୟାକର୍ଷଣ ଶକ୍ତି (Gravity) ପୃଥିବୀ ପୃଷ୍ଠକୁ ଘେରି ରହିଛି। ଚୁମ୍ବକ ଲୁହାକୁ ଆକର୍ଷଣ କଲା ପରି ଭୂପୃଷ୍ଠର ମାଧ୍ୟାକର୍ଷଣ ଶକ୍ତି ପୃଥିବୀର ସମସ୍ତ ଜଡ଼ ଓ ଜୀବନ୍ତ ବସ୍ତୁକୁ ଏହାର କେନ୍ଦ୍ର ଆଡ଼କୁ ଆକର୍ଷଣ କରି ନିଜ ନିଜ ସ୍ଥାନରେ ଧରି ରଖିଛି। ଏହି ଶକ୍ତି ବିନା ଭୂପୃଷ୍ଠର ସମସ୍ତ ପଦାର୍ଥ ଯଥା:- ବୃକ୍ଷଲତା, ଘରଦ୍ୱାର, ଜୀବଜନ୍ତୁ ଓ ନଦୀସମୁଦ୍ରର ଜଳରାଶି ଇତ୍ୟାଦି ଶୂନ୍ୟମଣ୍ଡଳରେ ବିକ୍ଷିପ୍ତ ହୋଇ ଭାସି ବୁଲନ୍ତା। ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ଯୋଗୁ ଭୂପୃଷ୍ଠରେ ଯେ କୌଣସି ବସ୍ତୁ ଉପରକୁ ପକାଇଲେ ତାହା ପରକ୍ଷଣରେ ନିମ୍ନଗାମୀ ହୋଇ ଭୂମି ସ୍ପର୍ଶ କରିଥାଏ। ପୃଥିବୀର ଏହି ମାଧ୍ୟାକର୍ଷଣ ଶକ୍ତି ମହାକାଶରେ ବହୁଦୂର ଯାଏ ବ୍ୟାପ୍ତ ହୋଇ ରହିଛି। ତୁମ୍ଭେମାନେ ଲକ୍ଷ୍ୟ କରିଥିବ କିପରି ଆପୋଲୋ-୧୧ ଯାନ ଭୂପୃଷ୍ଠ ତ୍ୟାଗକରି ଉର୍ଦ୍ଧ୍ୱଗାମୀ ହେବାକୁ ତିନୋଟି କ୍ଷେପରେ ଗତି କରିଥିଲା। ପୃଥିବୀପୃଷ୍ଠରେ ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ପ୍ରବଳ। ଏହି ଶକ୍ତିର କବଳରୁ ସମ୍ପୂର୍ଣ୍ଣ ଭାବେ ମୁକ୍ତ ହୋଇ ମହାକାଶରେ ଯାତ୍ରା କରିବା ପାଇଁ ଦ୍ରୁତବେଗ ଆବଶ୍ୟକ। ଏହାକୁ ପଳାୟନ ବେଗ ବା ଏସ୍‌କେପ୍ ଭେଲସିଟି (Escape velocity) କହନ୍ତି। ଏହି ବେଗ ଘଣ୍ଟାକୁ ୪୦,୦୦୦ କିଲୋମିଟର। ଆପୋଲୋ-୧୧ ଯାନ ପ୍ରାରମ୍ଭରୁ ଏହି ବେଗରେ ଉର୍ଦ୍ଧ୍ୱଗାମୀ ହେବାର କ୍ଷମତା ବା ଶକ୍ତିସମ୍ପନ୍ନ ହୋଇଥିଲେ ମଧ୍ୟ, ଏହା ତିନୋଟି କ୍ଷେପରେ, ତିନୋଟି ଅଲଗା ଅଲଗା ବେଗରେ ଗତି କରିଥିଲା। କାରଣ, ଆପୋଲୋ-୧୧ ଯାନ ପ୍ରଥମରୁ ପୂର୍ଣ୍ଣ ବେଗରେ ଅର୍ଥାତ୍ ଘଣ୍ଟାକୁ ୪୦,୦୦୦ କିଲୋମିଟର ବେଗରେ ଭୂପୃଷ୍ଠରୁ ଉର୍ଦ୍ଧ୍ୱଗାମୀ ହୋଇଥିଲା। ପୃଥିବୀକୁ ଘେରି ରହିଥିବା ବାୟୁମଣ୍ଡଳର ସଂଘର୍ଷରେ ଅଗ୍ନିସଂଚାରିତ ହୋଇ ଜଳିଯିବାର ସମ୍ଭାବନା ଥିଲା। ତେଣୁ ପ୍ରଥମ କ୍ଷେପରେ, ଓଜନଦାର ଆପୋଲୋ-୧୧ ଯାନଟିକୁ ଉର୍ଦ୍ଧ୍ୱଗାମୀ କରିବାକୁ ଏହାର ତଳ ଭାଗରେ ସଂଯୁକ୍ତ ହୋଇଥିବା ସର୍ବାଧିକ ପରିମାଣର ଜାଳେଣି (ପ୍ରାୟ ୨୨ ଟନ୍‌ର ତରଳ ଅମ୍ଳଜାନ ଓ କେରୋସିନ୍) ଡ଼ିବାଟି ଅଗ୍ନି ସଂଯୋଗ ହୋଇ ଜଳି ଉଠିଲା। ଏହା ଯାନଟିକୁ ପ୍ରଥମ ଧକ୍କା ଦେଇ ଘଣ୍ଟାକୁ ୯,୬୦୦ କିଲୋମିଟର ବେଗରେ ୫୭ କିଲୋମିଟର

ଉଚ୍ଚକୁ ଉଠାଇ ନେଇଥିଲା। ମିନିଟ୍ ଦୁଇମିନିଟ୍ ପରେ ଏ ପ୍ରଥମ ଡ଼ିବା ଜାଳେଣିଶୂନ୍ୟ ହୋଇ, ଜ୍ୱଳନ୍ତ ଅଗ୍ନିଭାଗ ରୂପେ ଭୂପୃଷ୍ଠକୁ ଖସି ପଡ଼ିଲା। ସଙ୍ଗେ ସଙ୍ଗେ, ଦ୍ୱିତୀୟ ଇନ୍ଧନ ବା ଜାଳେଣୀ ଥିବା ଡ଼ିବାଟି ଅଗ୍ନି ସଂଯୋଗ ହୋଇ ଜଳି ଉଠିଲା। ଏହି ଡ଼ିବାଟିରେ ଜାଳେଣିର ପରିମାଣ ପ୍ରଥମ ଡ଼ିବା ଅପେକ୍ଷା କମ୍ ଥିଲା। ଏହି ଜାଳେଣି ଜଳିଉଠି କାର୍ଯ୍ୟକାରୀ ହୋଇ ଆପୋଲୋ-୧୧ ଯାନର ଉର୍ଦ୍ଧ୍ୱଗତିରେ ସାହାଯ୍ୟ ପାଇଁ ଦ୍ୱିତୀୟ ଧକ୍କା ମାରିବା ଦ୍ୱାରା, ଯାନଟି ଘଣ୍ଟାକୁ ୨୫,୦୦୦ କିଲୋମିଟର୍ ବେଗରେ ୧୮୦ କିଲୋମିଟର୍ ଉର୍ଦ୍ଧ୍ୱକୁ ଉଠିଗଲା। ଏ ଡ଼ିବାଟି ମଧ୍ୟ ଜାଳେଣି ଶୂନ୍ୟ ହୋଇ ଯାନଟିରୁ ଅଲଗା ହୋଇ ପୃଥିବୀ ଉପରକୁ ଖସି ପଡ଼ିଲା। ତତ୍କ୍ଷଣାତ୍ ଯାନ ସଂଲଗ୍ନ ତୃତୀୟ ଓ ଶେଷ ତରଳ ଅମ୍ଳଜାନ ଓ ଉଦ୍‌ଜାନ ପୂର୍ଣ୍ଣ ଡିବାଟିରେ ଅଗ୍ନି ସଂଯୋଗ ହୋଇ ଜଳି ଉଠିଲା। ଏହି ଶେଷ ଡିବାଟିରେ ଇନ୍ଧନର ପରିମାଣ ସବୁଠାରୁ କମ୍। କାରଣ, ପୃଥିବୀର ଘନ ବାୟୁମଣ୍ଡଳର ସ୍ତର ଅତିକ୍ରମ କରି ଉର୍ଦ୍ଧ୍ୱକୁ ଉଠିଗଲା ପରେ ଯାନଟିର ଅଗ୍ରଗତି ପାଇଁ ବିଶେଷ ଶକ୍ତି ପ୍ରୟୋଜନ ହୁଏ ନାହିଁ। ଏହି କ୍ଷୁଦ୍ରତମ ଇନ୍ଧନ ଡିବାଟି କାର୍ଯ୍ୟକାରୀ ହେବା ସହ, ଆପୋଲୋ-୧୧ ଯାନଟିକୁ ଏହା ତୃତୀୟାବସ୍ଥାର ଧକ୍କା ଦେଇ, ଘଣ୍ଟାକୁ ୨୭,୦୦୦ କିଲୋମିଟର୍ ବେଗରେ, ଏ ଉଚ୍ଚତାକୁ ଉଠାଇ ଆଣି ପୃଥିବୀ ପରିକ୍ରମଣ ପଥ (Earth's orbit) ରେ ପହଞ୍ଚାଇ ଦେବାପରେ ତାହାର କାର୍ଯ୍ୟ ବନ୍ଦ୍ କରି ଦିଆଗଲା। ଫଳରେ ଏହି ତୃତୀୟ ଡିବାଟି ଅବଶିଷ୍ଟ ଅବ୍ୟବହୃତ ଇନ୍ଧନ ସହ ଆପୋଲୋ-୧୧ ଯାନ ସଂଲଗ୍ନ ହୋଇ ରହିଛି। ଆପୋଲୋ-୧୧ ଭଳି, ଆମ ପଶୁପକ୍ଷୀଙ୍କ ଯାନଟି ମଧ୍ୟ, ସେହିପରି ତିନୋଟି କ୍ଷେପରେ ଏହି ପରିକ୍ରମଣ ପଥରେ (Earth's orbit) ପହଞ୍ଚିଛି। ପୃଥିବୀ ଉପରୁ ଏତେ ଉଚ୍ଚତାରେ ଅବସ୍ଥିତ, ଏ କାଳ୍ପନିକ ପରିକ୍ରମଣ ପଥ ଆର୍ଥସ୍ ଅରବିଟ୍ (Earth's orbit) କିମ୍ବା ପାର୍କିଂ ଅରବିଟ୍ (Parking orbit) ନାମରେ ପରିଚିତ। ଭୂପୃଷ୍ଠରୁ ପ୍ରେରିତ ସମସ୍ତ ମହାକାଶ ଯାନ (ମାନବଚାଳିତ ଓ ଯନ୍ତ୍ରଚାଳିତ) ଏହି ଉଚ୍ଚତାରେ ପହଞ୍ଚି ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମଣ କରିଥାଆନ୍ତି। ଏହି ଅବସରରେ, ଯାନ ଗୁଡିକର ସମସ୍ତ ଯନ୍ତ୍ରପାତିର କାର୍ଯ୍ୟକୁଶଳତା, ଭୂଭାଗସ୍ଥ ନାସାର (NASA) ମିସନ୍ କଣ୍ଟ୍ରୋଲଙ୍କ (Mission Control) କର୍ମଚାରୀଙ୍କ ନିର୍ଦ୍ଦେଶ କ୍ରମେ ପରୀକ୍ଷା କରି ଦେଖାହୋଇଥାଏ। ଯଦି ଯାନର ସମସ୍ତ ଯନ୍ତ୍ରପାତି ସଚ୍ଚଳ ଅବସ୍ଥାରେ ଥାଏ ତେବେ ଶେଷ ଥର ପାଇଁ ଯାନକୁ କାର୍ଯ୍ୟକାରୀ କରି ଦ୍ରୁତ ଗତିରେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ନିଜର ଗନ୍ତବ୍ୟ ସ୍ଥଳ (ଗ୍ରହ ଉପଗ୍ରହ ଇତ୍ୟାଦି) ଉଦ୍ଦେଶ୍ୟରେ ଯାତ୍ରା କରେ। ନଚେତ୍ ଯନ୍ତ୍ରପାତିରେ ଦୋଷତ୍ରୁଟି ଥିଲେ ତାହାକୁ ଭୂପୃଷ୍ଠକୁ ଫେରାଇ ନିଆଯାଏ। ଏହି ଉଚ୍ଚତାରୁ ମହାକାଶ ଯାନକୁ, ଭୂପୃଷ୍ଠକୁ ଫେରାଇ ଆଣିବା ସହଜ ସାଧ୍ୟ।

''ବର୍ତ୍ତମାନ ଆପୋଲୋ-୧୧ ଯାନଟି, ଏଠି ପୃଥିବୀ ପରିକ୍ରମଣ ପଥରେ କିଛି ସମୟ ପାଇଁ ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମଣ କରି ରହିବା ମଧ୍ୟରେ ମାନବ ବ୍ୟୋମଚାରୀ ତିନିଜଣ, ଯାନ ମଧ୍ୟସ୍ଥ ଯନ୍ତ୍ରପାତି ଗୁଡିକର ଦୋଷତ୍ରୁଟି ପରୀକ୍ଷା କରି ଦେଖିବେ। ଆମେ ମଧ୍ୟ ସେପରି କରିବୁ। ଯନ୍ତ୍ରପାତି ସବୁ ଠିକ୍ ଠାକ୍ ଥିଲେ, ରକେଟ୍ ଚାଲୁକରି ଯାନ ସଂଲଗ୍ନ ତୃତୀୟ ଓ ଶେଷ ଡିବାଟି ପୂନର୍ବାର ଅଗ୍ନି ସଂଯୋଗ ଦ୍ୱାରା କାର୍ଯ୍ୟକାରୀ କରି ଘଣ୍ଟାକୁ ୪୦,୦୦୦ କିଲୋମିଟର ବେଗରେ ଗତି କରିବୁ ଓ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ଚନ୍ଦ୍ରାଭିମୁଖେ ଯାତ୍ରା କରିବୁ। ଏହି ସ୍ଥାନରୁ ରକେଟ୍ ଫୁଟାଇ, ଚନ୍ଦ୍ରଦିଗକୁ ଯାତ୍ରା କରିବାର ଏ ପ୍ରଣାଳୀକୁ ଟ୍ରାନ୍ସଲୁନାର

ଇନ୍‌ଜକ୍‌ସନ (Translunar Injuction) କୁହାଯାଏ।

''ବର୍ତ୍ତମାନ, ଏହି ଉଚ୍ଚତାରେ ମଧ ପୃଥିବୀର ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ରହିଛି। କିନ୍ତୁ ଘୂର୍ଣ୍ଣନକାୟ ଗତିଶୀଳ ମହାକାଶଯାନ ମଧରେ ତାହା ଅନୁଭୂତ ହୁଏନାହିଁ। ଆମ ଯାନଟି ଏହି ପରିକ୍ରମଣ ପଥରେ ଗୋଲାକାର ପୃଥିବୀର ବକ୍ରଭାଗ (Bend) ମଧ ଦେଇ ଧୀରେ ଧୀରେ ତଳକୁ ଖସୁଛି। ଯାନ ସହ ଆମେ ଓ ଯାନ ମଧସ୍ଥ ସମସ୍ତ ବସ୍ତୁ ଯଥା, ମୋ କଲମ ଓ ଚଷମା ଇତ୍ୟାଦି, ଏକ ସମୟରେ, ଏକ ବେଗରେ ବାଧାହୀନ ଭାବେ ତଳକୁ ଖସୁଛି। ଫଳରେ ମୋ କଲମ ଓ ଚଷମା ଓଜନହୀନ ହୋଇ ଭାସିବୁଲୁଛି। ଓଜନହୀନତା, ମାଧ୍ୟାକର୍ଷଣ ଶକ୍ତିଶୂନ୍ୟତା ଯୋଗୁଁ ସୃଷ୍ଟି ହୋଇଥାଏ। ମାଧ୍ୟାକର୍ଷଣ ବିହୀନ ପରିବେଶରେ ଏହି ଓଜନହୀନ ଅନୁଭୂତି, ଭୂପୃଷ୍ଠର ରୋଲାରକୋଷ୍ଟର ଆରୋହଣର ଅନୁଭୂତି ସହ ସମାନ। ରୋଲାର୍‌କୋଷ୍ଟର ଊର୍ଦ୍ଧ୍ୱକୁ ଗତିକରି ହଠାତ୍ ତଳକୁ ଖସି ଆସିଲେ ଯେମିତି ଆକାଶିଆ ଲାଗେ, କିମ୍ବା ସାଇକେଲ୍‌ରେ ବସି ଗତି କରୁଥିଲା ବେଳେ ଗୋଟାଏ ଉଚ୍ଚ କୁଦ ଉପରକୁ ଚଢିଯାଇ ହଠାତ୍ ତଳକୁ ଗଡିଗଲା ବେଳେ ଯେଉଁ ଅନୁଭୂତି ହୁଏ, ତାହା ସହିତ ସମାନ। ଭୂପୃଷ୍ଠରେ ଏପରି ଅନୁଭୂତି କ୍ଷଣସ୍ଥାୟୀ। କିନ୍ତୁ ମହାକାଶରେ ଅବସ୍ଥାନ କଲେ ଏପରି ଅନୁଭୂତି ନିରବଚ୍ଛିନ୍ନ ଭାବେ ଲାଗିରହିଥାଏ। ସେଥିରେ ଏକ ଅଭିନବ ଆନନ୍ଦ ଓ ଅନୁଭବ ଥାଏ।''

''ଜ୍ଞାନୀ ମହାଶୟ!!'' ମାଛ ପେଚାମହାଶୟଙ୍କ କଥା ମଝିରେ ବାଧାଦେଇ ଉଚ୍ଚ ସ୍ୱରରେ କହି ଉଠିଲା-- ''ଆପଣ କହିବା ଅନୁଯାୟୀ ଯଦି ଆମର ଯାନଟି ପୃଥିବୀର ମାଧ୍ୟାକର୍ଷଣ ଶକ୍ତିଦ୍ୱାରା ଆକର୍ଷିତ ହୋଇ ଧୀରେ ଧୀରେ ତଳକୁ ଖସୁଛି, ତେବେ କିଛି ସମୟ ପରେ ଆମର ଏ ଯାନ, ଭୂପୃଷ୍ଠକୁ ଖସି ପଡି ଚୁରମାର୍ ହୋଇଯିବ ନିଶ୍ଚୟ ?''

''ନା, ତାହା ଏପରି ସ୍ଥଳେ ସମ୍ଭବ ନୁହେଁ। କାରଣ, ଆମ ଯାନଟି ପୃଥିବୀର ଚତୁର୍ଦ୍ଦିଗରେ ଏକ ନିର୍ଦ୍ଦିଷ୍ଟ ବେଗରେ ପରିକ୍ରମଣ କରୁଛି। ଆମ ଯାନର ପରିକ୍ରମଣର ବେଗ ଓ ଭୂପୃଷ୍ଠର ମାଧାକର୍ଷଣ ଶକ୍ତିର ଆକର୍ଷଣ ମଧରେ ଏକ ଭାରସାମ୍ୟ (Balance) ସୃଷ୍ଟି ହୋଇଛି। ଯାନର ଏ ଅଗ୍ରଗତି ବନ୍ଦ ନ ହେଲା ଯାଏଁ, ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଏହାକୁ ଆକର୍ଷିତ କରି ଭୂପତିତ କରି ପାରିବ ନାହିଁ। ଉଦାହରଣ ସ୍ୱରୂପ, ଖଣ୍ଡେ ଦଉଡିର ଗୋଟିଏ ମୁଣ୍ଡରେ ଛୋଟ ପଥର ଖଣ୍ଡେ ବାନ୍ଧି ଅନ୍ୟମୁଣ୍ଡକୁ ହାତରେ ଧରି ଉପରେ ବୃତ୍ତାକାରରେ ଘୂରାଇ ବୁଲାଇଲେ ଦେଖିବ ଯେ ଯେପର୍ଯ୍ୟନ୍ତ ତୁମେ ପଥର ଖଣ୍ଡିକ ଘୂରାଉଥିବ ମାଧ୍ୟାକର୍ଷଣ ଶକ୍ତିର ଆକର୍ଷଣ ସତ୍ତ୍ୱେ ତାହା ଶୂନ୍ୟରେ ରହି ସେମିତି ଘୂରି ବୁଲୁଥିବ। ଏହାକୁ କେନ୍ଦ୍ରାପସାରୀ ଶକ୍ତି (Centrifugal force) କହି ଥାଆନ୍ତି। ଘୂରାଇବା ବନ୍ଦ କରିଦେବା କ୍ଷଣି ପଥର ଖଣ୍ଡିକ ତଳକୁ ଖସି ପଡିବ। ସେହିପରି, ଆମ ଯାନଟି ଏଠି ଏକ ନିର୍ଦ୍ଦିଷ୍ଟ ବେଗରେ ପୃଥିବୀର ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା ଯାଏ ଏହା ଭୂପୃଷ୍ଠକୁ ଖସି ପଡିବ ନାହିଁ।''

ମହାକାଶରେ ମାଧାକର୍ଷଣ ଶକ୍ତିର ପ୍ରଭାବ ଅନୁଭୂତ ହୁଏ ନାହିଁ। ତେଣୁ ଯାନ ମଧସ୍ଥ ବ୍ୟୋମଚାରୀଙ୍କ ଚଳପ୍ରଚଳ ଓ ଅନ୍ୟାନ୍ୟ କାର୍ଯ୍ୟରେ ବହୁ ପ୍ରତିବନ୍ଧକ ସୃଷ୍ଟି ହୁଏ। ସେ ସମସ୍ୟାର ସମାଧାନ ପାଇଁ ଯାନ ମଧରେ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଛି। ବ୍ୟୋମଚାରୀମାନେ ଚଲାବୁଲା ପାଇଁ ଚୁମ୍ବକ ଲଗା ଜୋତାର ବ୍ୟବହାର ସହ ଯାନର ବିଭିନ୍ନ ସ୍ଥାନ ଓ ଛାତରେ ଖଞ୍ଜା ହୋଇଥିବା

ହାତଦଣ୍ଡା (Hand Rail) ଗୁଡିକ ମଧ ବ୍ୟବହାର କରିଥାଆନ୍ତି। ବ୍ୟୋମଚାରୀଙ୍କର ଖାଦ୍ୟପେୟ ମଧ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ ହୋଇଥାଏ। ମାଧ୍ୟାକର୍ଷଣ ଶକ୍ତି ବିହୀନ ମହାଶୂନ୍ୟରେ ଉପର ତଳ ଉଭୟ ସମାନ। ତୁମ୍ଭେମାନେ ଲକ୍ଷ୍ୟ କରିଥିବ ଯେ, ଆମର ଯାନଟି ସମୟେ ସମୟେ ଓଲଟ ଭାବେ ଗତି କରୁଛି। ତଦ୍ୱାରା ଆମ୍ଭମାନଙ୍କର ମୁଣ୍ଡ ତଳକୁ ଓ ଦେହ ଉପରକୁ ହୋଇ ରହୁଛି। କିନ୍ତୁ ଆମ୍ଭେମାନେ ସେପରି ଅବସ୍ଥାରେ କୌଣସି ଅସୁବିଧା କିମ୍ବା ଅଶ୍ୱସ୍ତି ବୋଧ କରୁନାହୁଁ। ତୁମ୍ଭମାନଙ୍କୁ ବର୍ତ୍ତମାନ ମୁଁ ଏହି ମାଧାକର୍ଷଣ ଶକ୍ତିର ଆବିଷ୍କାରଙ୍କ ବିଷୟରେ ସଂକ୍ଷେପରେ କିଛି କହିବି। ଭୂପୃଷ୍ଠର ଏହି ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ଲକ୍ଷ୍ୟ କରି, ସେ ବିଷୟରେ ସର୍ବ ପ୍ରଥମେ ଉଲ୍ଲେଖ କରିଥିଲେ, ଜଣେ ପ୍ରସିଦ୍ଧ ବୈଜ୍ଞାନିକ। ତାଙ୍କ ନାମ ହେଲା ନିଉଟନ୍।''

''ନିଉଟନ୍!....'' ପେଚାମହାଶୟଙ୍କ କଥା ମଝିରେ ବାଧା ଦେଇ ଠେକୁଆ ଅତି ଉତ୍ତେଜିତ ସ୍ୱରରେ କହି ଉଠିଲା।

''ହଁ!....ହଁ!.....ମୁଁ ତାଙ୍କ ବିଷୟରେ ସବୁ କିଛି ଜାଣିଛି।''

''ସାବାସ୍.... ମୁଁ ଜାଣି ଖୁସି ହେଲି ଯେ ତୁମ୍ଭମାନଙ୍କ ମଧରୁ ଅନ୍ତତଃ ଜଣକୁ ନିଉଟନଙ୍କ ଆବିଷ୍କାର କଥା ଜଣା ଅଛି।'' ପେଚାମହାଶୟ ଖୁସି ହୋଇ ଠେକୁଆକୁ ପ୍ରଶଂସା କରି କହିଲେ, ''ତାହେଲେ ଶ୍ୱେତାଙ୍ଗ, ତୁମେ ନିଉଟନଙ୍କର ଆବିଷ୍କାରର କାହାଣୀଟି ତୁମର ଅନ୍ୟ ଦୁଇ ସାଥିଙ୍କୁ କହି ଶୁଣାଇଦିଅ।''

''ତେବେ ଶୁଣ....'' ଠେକୁଆ ଆରମ୍ଭ କଲା, ''ଦିନେ ନିଉଟନ୍, ପୋଖରୀକୂଳରେ ଗୋଟେ ସେଓ ଗଛ ତଳେ ବସି ଗୋଟେ ସେଓ ପିଠା ଖାଉଥିଲେ। ହଠାତ୍ ଗଛ ଉପରୁ ଗୋଟେ ସେଓ ଫଳ ଖସି ତାଙ୍କ ମୁଣ୍ଡ ଉପରେ ଦୁମ୍‌କରି ପଡି ତଳକୁ ଗଡିଗଲା। ''ଓଃ....କି ଯନ୍ତ୍ରଣା!!.....'' ନିଉଟନ ମୁଣ୍ଡ ଆଉଁସି କହି ଉଠିଲେ। ସେଓ ମାଡରେ, ନିଉଟନଙ୍କ ମୁଣ୍ଡ ଉପର ଫୁଲି ଗୋଟେ ଆବୁ ଭଳି ବାହାରି ପଡିଲା।

''କି ଆଶ୍ଚର୍ଯ୍ୟ!!'' ନିଉଟନ୍ ଭାବିଲେ, ''ଏକା ଫଳ। ପିଠା ଆକାରରେ ଖାଇଲେ କି ନରମ....କି ସ୍ୱାଦିଷ୍ଟ!! କିନ୍ତୁ ମୁଣ୍ଡ ଉପରେ ପଡିଲେ କି ଶକ୍ତ!!.... କି ଯନ୍ତ୍ରଣାଦାୟକ!!'' ନିଉଟନଙ୍କ ମୁଣ୍ଡର ଫୁଲା ବହୁତ ଦିନ ଯାଏ ସେମିତି ଅବସ୍ଥାରେ ରହିଲା। କିନ୍ତୁ ହଳଦୀ, ଅଦା ଓ ରସୁଣର ମିଶ୍ରଣରେ ଏକ ନୂଆ ଔଷଧ ପ୍ରସ୍ତୁତ କରି ଫୁଲା ଉପରେ ଲେପ ଦେଲାରୁ ତାଙ୍କ ଯନ୍ତ୍ରଣା ଓ ଫୁଲା ଉଭୟର ଉପଶମ ହେଲା।''

''ତେବେ, ସୁବୋଧ ଭାଇ,...... ନିଉଟନ୍‌ଙ୍କର କେଉଁ ଆବିଷ୍କାରଟି ବେଶୀ ପ୍ରସିଦ୍ଧ? ସେଓ ଫଳର ଦୁଇରୂପ ଯଥା, କୋମଳ ପିଠା ରୂପ ଓ କଠିଣ ଫଳ ରୂପ? ନା ପୀଡା ହାରିଣୀ, ଆବୁ ତାରିଣୀ ଅଦା ରସୁଣ ପ୍ରଲେପ?'' କାଉ ଥଟ୍ଟା କରି କହି ଉଠିଲା।

''ଏହା ଭିତରୁ କୌଣସିଟି ତାଙ୍କର ପ୍ରସିଦ୍ଧ ଆବିଷ୍କାର ନୁହେଁ। ତୁମେ ଚୁପ୍ ହୋଇ ଧୈର୍ଯ୍ୟ ରଖି ଶୁଣ..... ମୁଁ କହିବି।'' ଠେକୁଆ ବିରକ୍ତ ହୋଇ କହି ଉଠିଲା, ''ସେଓଟି ଭୂମି ଉପରେ ପଡିବା ଦେଖି, ନିଉଟନ୍‌ଙ୍କ ମନରେ ପ୍ରଶ୍ନ ଉଠିଲା-- ''ଆଚ୍ଛା! ସେଓଟା ଗଛରୁ ଖସି ଉପର ଆକାଶକୁ ଉଠି ନ ଗଲା କାହିଁକି? କିମ୍ବା ତାହା ପାଖ ପୋଖରୀର ପାଣି ଭିତରେ ପଡିଲା ନାହିଁ କାହିଁକି? ତା ପରିବର୍ତ୍ତେ ସେଓଟି ତାଙ୍କ ନିକଟରେ ଭୂମି ଉପରେ ପଡି ରହିବାର କାରଣ

କଣ ?'' ବିଜୁଳି ଝଲକ୍ ଭଳି ହଠାତ୍, ତାଙ୍କ ମନ ଭିତରେ ଏକ ନବୀନ ଭାବର ଉଦୟ ହେଲା। ସଙ୍ଗେ ସଙ୍ଗେ, ସେ କହି ଉଠିଲେ, ''ଧନ୍ୟ ପ୍ରଭୁ !!.... ଧନ୍ୟ ତୁମର ମହିମା !!.... ଧନ୍ୟ ତୁମର ଇଚ୍ଛା !!.....।'' ନିଉଟନ ବୁଝିପାରିଲେ ଯେ ଇଚ୍ଛାମୟ ଭଗବାନ୍, ସେହି ରସାଳ, ଅମୃତ ତୁଲ୍ୟ ସ୍ୱାଦିଷ୍ଟ ଫଳଟିକୁ କୌଣସି ନଭଶ୍ଚର ପକ୍ଷୀ, ଯଥା କାଉ କିମ୍ବା ଜଳଚର ଜୀବ, ଯଥା ମାଛ ପ୍ରଭୃତିଙ୍କୁ ଖାଦ୍ୟ ରୂପେ ପ୍ରଦାନ କରିବାକୁ ଚାହୁଁନଥିଲେ। ଫଳଟି ତାଙ୍କ ପାଖ ଭୂମିରେ ପଡିବାର ଅର୍ଥ, ଭଗବାନ୍ ଫଳଟିକୁ ତାଙ୍କ ସୃଷ୍ଟିର ସର୍ବଶ୍ରେଷ୍ଠ ଜୀବ ଯଥା ମୋଭଳି ଠେକୁଆ ଓ ମାନବ ପ୍ରଭୃତି ସ୍ଥଳଚର ଜୀବଙ୍କୁ ପ୍ରଦାନ କରିବାକୁ ଇଚ୍ଛା କରୁଥିଲେ। ଏପରି ମହତ୍ ଭାବ, ମୋ ନିଉଟନ୍ ଅଜାଙ୍କ ମନକୁ ଆସିଥିଲା ବୋଲି, ମୋ ବାପା ମତେ କହିଥିଲେ'' ଠେକୁଆ କଥା ଶେଷ କରି ଆତ୍ମସନ୍ତୋଷର ସହ ସମସ୍ତଙ୍କୁ ଚାହିଁଲା।

ଠେକୁଆ କଥା ଶୁଣି କାଉ ଓ ମାଛ ମନେ ମନେ ରାଗି ଉଠିଥିଲେ ମଧ କଥାର ସତ୍ୟତା ଜାଣିବା ପାଇଁ ପେଚାମହାଶୟଙ୍କ ମତାମତକୁ ଅପେକ୍ଷା କରି ରହିଲେ।

ପେଚାମହାଶୟ ଗଳା ଝାଡି, ଠେକୁଆ ଆଡକୁ ଚାହିଁ ଆରମ୍ଭ କଲେ, ''ତୁମ ଗଳ୍ପଟି ଆମୋଦ ଦାୟକ ସତ, କିନ୍ତୁ ପ୍ରକୃତ ପକ୍ଷେ ତୁମ ବର୍ଣ୍ଣିତ ଘଟଣାଟି କୌଣସି ବୈଜ୍ଞାନିକଙ୍କ ପ୍ରସିଦ୍ଧ ଆବିଷ୍କାର ଭଳି ମନେ ହେଲା ନାହିଁ। ବରଂ ଏହା ଏକ ଜାତିପ୍ରେମୀ ଠେକୁଆର ଇଚ୍ଛାପୂର୍ଣ୍ଣ ପରିକଳ୍ପନା ଭଳି ମନେ ହେଲା। ମୁଁ କିନ୍ତୁ ତୁମଠାରୁ ତୁମ ନିଉଟନ ଅଜାଙ୍କର ଆବିଷ୍କାର ବା ପରିକଳ୍ପନା ବିଷୟରେ ଶୁଣିବାକୁ ଚାହିଁନଥିଲି। ତା' ପରିବର୍ତ୍ତେ, ମାନବ ବୈଜ୍ଞାନିକ ଆଇଜାକ୍ ନିଉଟନ୍‌ଙ୍କ ଆବିଷ୍କାର ବିଷୟରେ ଶୁଣିବାକୁ ଇଚ୍ଛା କରିଥିଲି। ବର୍ତ୍ତମାନ ମୁଁ ତୁମକୁ ମାନବ ବୈଜ୍ଞାନିକ ନିଉଟନଙ୍କ ଆବିଷ୍କାର ବିଷୟରେ ସଂକ୍ଷେପରେ କହିବି ଶୁଣ। ସେଓଟି ଗଛରୁ ତଳକୁ ପଡିବା ଦେଖି ମାନବ ବୈଜ୍ଞାନିକ ନିଉଟନଙ୍କ ମନରେ ହଠାତ୍ ଏକ ଚିନ୍ତାର ଉଦ୍ରେକ ହେଲା। ତାହାହେଲା, ''ସେଓଟି ଗଛରୁ ଖସି ଉପରକୁ ଉଠି ନ ଯାଇ ତଳକୁ ପଡିଲା କାହିଁକି ? ନିଶ୍ଚୟ ପୃଥିବୀପୃଷ୍ଠରେ ଏପରି ଏକ ଅଦ୍ଭୁତ ଶକ୍ତି ନିହିତ ଅଛି, ଯାହା ସମସ୍ତ ସଚଳ ଓ ଅଚଳ ପଦାର୍ଥକୁ ସର୍ବଦା ତଳକୁ ଟାଣୁଛି।'' ତାହାହେଲା ମାଧ୍ୟାକର୍ଷଣ ଶକ୍ତି। ଏହି ଶକ୍ତି ଦ୍ୱାରା ଅନନ୍ତ ମହାଶୂନ୍ୟସ୍ଥ କୋଟୀ କୋଟୀ ଗ୍ରହ ଓ ନକ୍ଷତ୍ରାବଳିଙ୍କ ପରିକ୍ରମଣ ପ୍ରଣାଳୀ ଓ ସେଗୁଡିକର ସୃଷ୍ଟି, ସ୍ଥିତି ଓ ପ୍ରଳୟ କ୍ରିୟା ନିୟନ୍ତିତ ହୋଇଥାଏ। ନିଉଟନ, ମାଧ୍ୟାକର୍ଷଣ ଶକ୍ତି ଓ ଗ୍ରହ ନକ୍ଷତ୍ରାବଳିଙ୍କ ପରିକ୍ରମଣ ପ୍ରଣାଳୀ ଗୁଡ଼ିକ ବିଷୟରେ ବହୁ ମୂଲ୍ୟବାନ ତଥ୍ୟାବଳୀ ଆବିଷ୍କାର କରି ସେଗୁଡ଼ିକୁ ଗଣିତ ଦ୍ୱାରା ପ୍ରମାଣିତ କରି ଉଲ୍ଲେଖ କରିଯାଇଛନ୍ତି। ସେଗୁଡ଼ିକ ମଧ୍ୟରେ, ମାଧ୍ୟାକର୍ଷଣ ଶକ୍ତିର ତଥ୍ୟ (Gravitational Theory) ଓ ଚଳତ୍‌ଶକ୍ତିର ତଥ୍ୟ (Theory of Motion) ପ୍ରସିଦ୍ଧ। ଏଗୁଡ଼ିକ ଗ୍ରହ ନକ୍ଷତ୍ର ବିଜ୍ଞାନ (Astronomy) କ୍ଷେତ୍ରରେ ଅତୁଳ ଦାନ ସ୍ୱରୂପ। ନିଉଟନ୍‌ଙ୍କର ଆଲୋକବିଦ୍ୟା (Optics) କ୍ଷେତ୍ରରେ ମଧ ବହୁ ଉଲ୍ଲେଖଯୋଗ୍ୟ ଅବଦାନ ଅଛି। ଆଲୋକର ଗଠନ, ଗତି ଓ ପ୍ରକୃତି ହୃଦୟଙ୍ଗମ କରିବାପାଇଁ ଏହା ଅପରିହାର୍ଯ୍ୟ। ବର୍ତ୍ତମାନ, ତୁମ୍ଭେମାନେ ନିଜ ନିଜର କମରପଟି ଖୋଲିଦିଅ। ଦେଖିବ, ତୁମ୍ଭେମାନେ ମଧ ମୋର ଚଷମା ଓ କଲମ ଭଳି ଓଜନହୀନ ଭାବେ ଯାନ ମଧରେ ଭାସିବୁଲିବ।''

ପେଚା ମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ, କାଉ, ଠେକୁଆ ଓ ମାଛ ନିଜ ନିଜ ଚେୟାର ସଂଲଗ୍ନ କମରପଟିଗୁଡ଼ିକ ଖୋଲି ଦେଇଥିଲେ। ସତକୁ ସତ ସେମାନେ ସମସ୍ତେ ଓଜନହୀନ ଭାବେ

ଯାନ ମଧ୍ୟରେ ଭାସି ବୁଲିଲେ। ସେମାନଙ୍କୁ ଯାନ ମଧ୍ୟରେ ଭାସି ବୁଲିବାର ଅନୁଭୂତି ଅତି ଅପୂର୍ବ ଓ ଆମୋଦଦାୟକ ମନେ ହେଲା। ପଶୁ ପକ୍ଷୀ ତିନିଜଣ, ଭାସମାନ ଅବସ୍ଥାରେ ବିଭିନ୍ନ ଦୈହିକ କଳାକୌଶଳ (Acrobatic) ଯଥା ଶୂନ୍‌ଚିତ୍ (Somersault) ଇତ୍ୟାଦି ପ୍ରଦର୍ଶନ କରିଥିଲେ। କିଛି ସମୟ ପରେ, ସେମାନେ ମୁଣ୍ଡବ୍ୟଥା, ଉଦରପୀଡ଼ା, ଓ ବମନ ଇତ୍ୟାଦି ଶାରିରୀକ ଅସୁସ୍ଥତାରେ ପୀଡ଼ିତ ହୋଇ ଉଠିଲେ। ପେଚା ମହାଶୟ ସେମାନଙ୍କୁ ନିଜ ନିଜର ସ୍ଥାନରେ ବସିଯିବାକୁ କହି ଚିକିତ୍ସା ଆରମ୍ଭ କଲେ ଓ କହିଲେ ଯେ ମାଧ୍ୟାକର୍ଷଣ-ଶୂନ୍ୟ ପରିବେଶ ସୃଷ୍ଟ ଓଜନହୀନତା ଯୋଗୁଁ ଏ ସବୁ ଅସୁସ୍ଥତା ଘଟେ।

# ଚତୁର୍ଥ ପରିଚ୍ଛେଦ

''କେତେବର୍ଷ ତଳେ, ମଣିଷ ଆକାଶରେ ଚଲାବୁଲା କରିଥିବା ଖବର ତମେ ଶୁଣିଥିବ। ଆକାଶରେ ଚାଲିବା କଥା ଶୁଣି ଆଶ୍ଚର୍ଯ୍ୟ ହଉଚ କି? ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ମାଟି ଉପରେ ଚାଲିବା ଭଳି ଶୂନ୍ୟ ଆକାଶରେ ବି ଚାଲବୁଲ କରିହେବ। ଏହାକୁ କହନ୍ତି ସ୍ପେସ୍ ୱାକ୍ (Space walk) ଅର୍ଥାତ୍ ଶୂନ୍ୟରେ ପଦଯାତ୍ରା।'' ପେଚା ମହାଶୟ ଆରମ୍ଭ କଲେ ''୧୯୬୦ ମସିହାରେ ମାନବ, ଜେମିନି ଅଭିଯାନ (Gemini Mission) ର କାର୍ଯ୍ୟକ୍ରମରେ, ମହାକାଶରେ ପଦଯାତ୍ରା କରିଥିଲା। ମୋ ମତରେ ତୁମ୍ଭେମାନେ ସେହି 'ଶୂନ୍ ଚାଲି' ବା 'ମହାକାଶ ପଦଯାତ୍ରା' କାର୍ଯ୍ୟ କରିବା ଆବଶ୍ୟକ। ଯଦିଓ, ସମୟ ଓ ଚନ୍ଦ୍ରପୃଷ୍ଠରେ ପହଞ୍ଚିବା ଦୃଷ୍ଟିରୁ, ସାମାନ୍ୟ ବିଳମ୍ବ ଘଟିପାରେ ତଥାପି ଏ ପରିସ୍ଥିତିରେ, ତୁମ୍ଭମାନଙ୍କ ପାଇଁ ଏହା ଏକ ମୂଲ୍ୟବାନ୍ ଶିକ୍ଷା ଓ ଅନୁଭୂତି ହେବ। ତେଣୁ ତୁମେ ତିନିଜଣ ସେଥିପାଇଁ ପ୍ରସ୍ତୁତ ହୋଇଯାଅ।''

ମାଛ, ଠେକୁଆ ଓ କାଉ, ତିନିଜଣ, ପରସ୍ପର ପ୍ରତି ଦୃଷ୍ଟିପାତ କରି ନୀରବ ରହିଲେ। କିଛିକ୍ଷଣ ପରେ କାଉ ଆରମ୍ଭ କଲା।

''ଏ ଯାନ ମଧ୍ୟରେ ଭାସି ବୁଲିବା, ମତେ ବହୁତ ମଜାଦାର ମନେ ହେଲା ସତ, କିନ୍ତୁ ତାହା ପରବର୍ତ୍ତୀ ଅନୁଭୂତି, ଅର୍ଥାତ୍ ଏ ସବୁ ଶାରିରୀକ ଅସୁସ୍ଥତା ମୋ ପାଇଁ ଆନନ୍ଦ ପ୍ରଦାୟକ ମନେ ହେଲା ନାହିଁ। ମୁଁ ନିଃସନ୍ଦେହରେ କହିପାରେ ଯେ, ଅସୀମ ଆକାଶରେ ଡ଼େଣା ନହଲାଇ ବିନା ପ୍ରୟାସରେ ଉଡ଼ିବା କିମ୍ବା ଭାସିବୁଲି 'ଶୂନ୍ୟ ଭ୍ରମଣ' କରିବା ନିଶ୍ଚୟ ଏକ ଅଭୂତପୂର୍ବ ଅନୁଭୂତି ହେବ। କିନ୍ତୁ ତାର ପରବର୍ତ୍ତୀ ଅବସ୍ଥା ଅର୍ଥାତ୍ ଅସୁସ୍ଥବୋଧ ମୋ ପାଇଁ ଅବାଞ୍ଛନୀୟ। ପୁନଶ୍ଚ ଯାନର ଏ କ୍ଷୁଦ୍ର କୋଠରୀ ମଧ୍ୟରେ ଭାସି ବୁଲିବା ଓ ବହିର୍ଭାଗର ଅନନ୍ତ ମହାକାଶରେ ଭାସି ବୁଲିବା ମଧ୍ୟରେ ଆକାଶ ପାତାଳ ତ ନୁହେଁ, ମୋ ଦୃଷ୍ଟିରେ 'ଆକାଶ କୋଠରୀ' ପାର୍ଥକ୍ୟ'', କାଉ ଥଟ୍ଟାଳିଆ ସ୍ୱରରେ କହିଲା। ''ମହାକାଶରେ ଶୂନ୍ୟରେ ପଦଭ୍ରମଣ କରୁଥିବା ସମୟରେ ଦୈବାତ୍ ଯଦି ମୁଁ ଦୂରକୁ ଭାସି ଚାଲିଗଲି, କିମ୍ବା କୌଣସି ଅଦୃଷ୍ଟ, ଅଶ୍ରୁତ ବସ୍ତୁ କିମ୍ବା ପରିସ୍ଥିତିର ସମ୍ମୁଖୀନ ହେଲି, ତାହାଲେ ତ ମୋ ପ୍ରାଣ ଗଲା। ଏ ସବୁ ଚିନ୍ତା କରି ମହାକାଶରେ ପଦଭ୍ରମଣ କରିବା ପାଇଁ ମୋ ମନ ହେଉ ନାହିଁ।''

''ତୁମର ଏପରି ଚିନ୍ତା ବୃଥା'' ପେଚା ମହାଶୟ ବିଶ୍ୱାସ ଜନ୍ମାଇବାକୁ ଯାଇ କହିଲେ ''ତୁମର ନିରାପତ୍ତାର ଦାୟୀତ୍ୱ ମୁଁ ଗ୍ରହଣ କରିବି। ପୁଣି ଓଜନହୀନତା ଦ୍ୱାରା ସୃଷ୍ଟ, ଏ ସମସ୍ତ ଶାରିରୀକ ଅସୁସ୍ଥତା ଅତି ନଗଣ୍ୟ। ଏଗୁଡ଼ିକରୁ କୌଣସିଟି ମାରାତ୍ମକ ନୁହେଁ। ସେ ସବୁର ପ୍ରତିକାରର ଉପାୟ ରହିଛି। ମାଧ୍ୟାକର୍ଷଣ ବିହୀନ ପରିବେଶରେ ଦୀର୍ଘକାଳ ଅବସ୍ଥାନ କଲେ, ଯେଉଁସବୁ ଅସୁସ୍ଥତା ଜାତ ହୁଏ, ତାହା ଶରୀର ପାଇଁ ଅତି କ୍ଷତିକାରକ। ସେଗୁଡ଼ିକ ହେଲା-- ମାଂସପେଶୀଗୁଡ଼ିକର ଦୁର୍ବଳତା, ମଜ୍ଜାରୁ କାଲ୍‌ସିଅମ୍ ହାନୀ, ରକ୍ତ ସଂଚାଳନରେ ପରିବର୍ତ୍ତନ, ହୃତପିଣ୍ଡର ଅସ୍ୱାଭାବିକ ସ୍ପନ୍ଦନ ଇତ୍ୟାଦି। ଏ ସବୁ ଅବସ୍ଥାର ଚିକିତ୍ସାର ଉପାୟ ଓ ଔଷଧ ମଧ୍ୟ ରହିଛି। ତେଣୁ ତୁମେ ନିର୍ଭୟ ଚିତ୍ତରେ ଏ କାର୍ଯ୍ୟ କରିବାକୁ ଆଗେଇ ଆସ।'' ପେଚା ମହାଶୟଙ୍କ ଅଭୟବାଣୀ ଶୁଣି, କାଉ 'ଶୂନ୍ୟଚାଲି' ପାଇଁ ସମ୍ମତ ହେଲା।

ଏହାପରେ ମାଛକୁ, ମହାଶୂନ୍ୟରେ ପଦଭ୍ରମଣ କରିବା ପାଇଁ ପ୍ରବର୍ତ୍ତାଇବାକୁ ଯାଇ, ପେଚାମହାଶୟ କହିଲେ--

''ବ୍ୟୋମଚାରୀମାନେ ତାଲିମ ନେଲାବେଳେ ସେମାନଙ୍କର ଅଧିକାଂଶ କାର୍ଯ୍ୟକଳାପ ଜଳମଗ୍ନ ଅବସ୍ଥାରେ ସମ୍ପାଦିତ ହୋଇଥାଏ। କାରଣ, ପାଣିତଳର ଅବସ୍ଥା ମହାଶୂନ୍ୟର ଓଜନହୀନ ଅବସ୍ଥା ମଧ୍ୟରେ ଅନେକ ସାମଞ୍ଜସ୍ୟ ଅଛି। ଯେହେତୁ ତୁମେ ଏକ ଜଳଚର ଜୀବ, ତୁମପାଇଁ ଏ 'ଶୂନ୍ୟଚାଲି' କାର୍ଯ୍ୟ ବିଶେଷ ଅସୁବିଧାଜନକ ନୁହେଁ। ତେଣୁ ତୁମେ ସ୍ୱଇଛାରେ ଏ କାର୍ଯ୍ୟରେ ଯୋଗ ଦେବ ବୋଲି ମୋର ଦୃଢ଼ ବିଶ୍ୱାସ।''

ଠେକୁଆ, ପେଚା ମହାଶୟଙ୍କୁ ସମର୍ଥନ କରି ଉତ୍ତେଜିତ ସ୍ୱରରେ କହି ଉଠିଲା--

''ହଁ....ହଁ.....ଜ୍ଞାନୀ ମହାଶୟ!.....ଆପଣ ଠିକ୍ କହିଲେ! ଧୀରଜ ଭାଇଙ୍କ ପାଇଁ ଏ କାର୍ଯ୍ୟ ସହଜ ସାଧ୍ୟ। କାରଣ, ପାଣି ଭିତରେ ପହଁରି ବୁଲିବା ଧୀରଜ ଭାଇଙ୍କର ଜନ୍ମଗତ ଅଭ୍ୟାସ। ମୋ ଦୃଷ୍ଟିରୁ, ପାଣିରେ ପହଁରିବା ଓ ମହାଶୂନ୍ୟରେ ଭାସି ବୁଲିବା ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ। ଆପଣ ଧୀରଜ ଓ ସୁବୋଧ ଭାଇଙ୍କୁ 'ଶୂନ୍ୟଚାଲି' ପାଇଁ ମନୋନୀତ କରି ଅତି ଦକ୍ଷ ଉପଦେଷ୍ଟାର ପରିଚୟ ଦେଲେ। ମୁଁ କିନ୍ତୁ ଏକ ସ୍ଥଳଚର ଜୀବ। ଭୂମି ଉପରେ ଚାଲିବା କିମ୍ବା ଡ଼େଇଁ ବୁଲିବା ବ୍ୟତୀତ ପହଁରିବା କିମ୍ବା ଉଡ଼ିବା ବିଷୟରେ ମୋର ତିଳେ ବି ଧାରଣା ନାହିଁ। ତେଣୁ ଶୂନ୍ୟଚାଲି ପାଇଁ ମୁଁ ପୂରା ଅନୁପଯୁକ୍ତ।''

ଠେକୁଆ କଥାରେ ପ୍ରତିବାଦ କରି ମାଛ କହିଲା, ''ଶ୍ୱେତାଙ୍ଗ ଭାଇ,......ତୁମେ ମହା ଫନ୍ଦିବାଜ। ଅନ୍ୟକୁ ଫାଶୀକାଠରେ ଚଢ଼ାଇ, ନିଜ ବେକ ମୁକୁଳାଇବା କଳା କୌଶଳରେ ତୁମେ ପ୍ରଥମ ସ୍ଥାନ ଅଧିକାର କରିବ। କିନ୍ତୁ ଗୋଟିଏ କଥା ବୋଧହୁଏ ତୁମେ ଭୁଲି ଯାଉଛ, ତାହାହେଲା, ଏ କାର୍ଯ୍ୟ 'ଶୂନ୍ୟଚାଲି' ନାମରେ ପରିଚିତ। ତାର ଅର୍ଥ ହେଲା, କେବଳ ପଦ ବିଶିଷ୍ଟ ପ୍ରାଣୀ, ଚାଲିବାକୁ ସମର୍ଥ ହୋଇଥାଆନ୍ତି। ମାତ୍ର ଦୁଇପଦ ବିଶିଷ୍ଟ ମାନବ ଏ 'ଶୂନ୍ୟଚାଲି' କୁ ସଫଳତାର ସହ ସମ୍ପାଦନ କରି ଖ୍ୟାତି ଅର୍ଜନ କରିଥିଲା। ତୁମେ ଚତୁଷ୍ପଦ ଅର୍ଥାତ୍ ଚାରିପାଦ ବିଶିଷ୍ଟ ଜୀବ; ତେଣୁ ତୁମେ ଏ କାର୍ଯ୍ୟ ପାଇଁ ବିଶେଷ ଯୋଗ୍ୟ। ତୁମେ ଏ 'ଶୂନ୍ୟଚାଲି' କାର୍ଯ୍ୟକୁ ଅତି ବିଚକ୍ଷଣ ଭାବେ ସମାପନ କରି ମାନବର କୃତିତ୍ୱକୁ ମ୍ଳାନ କରିଦେବ।''

ମାଛ ଓ ଠେକୁଆର ବାକ୍ ବିତର୍କ ବହୁ ସମୟ ପର୍ଯ୍ୟନ୍ତ ଲାଗିରହିଲା। ପେଚା ମହାଶୟ

ଆଉ ଅପେକ୍ଷା କରି ରହି ନପାରି କହିଲେ "ଏ ସବୁ ବାକ୍ ବିତର୍କ ଦ୍ୱାରା କିଛି ଲାଭ ହେଉନାହିଁ। ବର୍ତ୍ତମାନ୍ ଆମ୍ଭମାନଙ୍କର ସମୟର ଅଭାବ। ତୁମ୍ଭେମାନେ ଏପରି ପଛଘୁଞ୍ଚା ଦେଲେ, ଜୀବନରେ କୌଣସି କାର୍ଯ୍ୟରେ ସଫଳ ହୋଇପାରିବ ନାହିଁ। ସବୁ କାର୍ଯ୍ୟରେ ବିପଦ ଥାଏ। ଆଶଙ୍କା ଥାଏ। ତେଣୁ ନିର୍ଭୀକ ଭାବେ ସେପରି କାର୍ଯ୍ୟ କରିବାକୁ ଅଗ୍ରସର ହେଲେ ଜୀବନରେ ବହୁ ଉଚ୍ଚକୁ ଉଠିପାରିବ। ଏ 'ଶୂନ୍ୟଚାଲି'କୁ ତୁମେ ବ୍ୟୋମଚାରୀଙ୍କ କର୍ତ୍ତବ୍ୟ ରୂପେ ସମାପନ କରିବାକୁ ପ୍ରସ୍ତୁତ ହୋଇଯାଅ।"

ପେଚା ମହାଶୟ, ପଶୁପକ୍ଷୀ ତିନିଜଣଙ୍କୁ 'ଶୂନ୍ୟଚାଲି' ପାଇଁ ରାଜି କରିବାରେ ସଫଳ ହୋଇଥିଲେ। ତାଙ୍କ ନିର୍ଦ୍ଦେଶ ଅନୁଯାୟୀ କାଉ, ଠେକୁଆ ଓ ମାଛ 'ଶୂନ୍ୟଚାଲି' ପାଇଁ ବ୍ୟବହାର୍ଯ୍ୟ ମହାକାଶ ପୋଷାକ (Space Suit), ଶିରାଭରଣର (Helmet), ହସ୍ତାଭରଣ (Gloves) ଇତ୍ୟାଦି ପିନ୍ଧିଥିଲେ। ଏ ସମସ୍ତ ପୋଷାକପତ୍ର ଅତି ଓଜନିଆ ଥିଲା ଓ ପଶୁପକ୍ଷୀମାନଙ୍କୁ ଚଳପ୍ରଚଳ ପାଇଁ ଖୁବ୍ ଅସୁବିଧା ଜନକ ମନେ ହେଲା। ସେମାନେ ପେଚା ମହାଶୟଙ୍କୁ ଏ ସମସ୍ତ ପରିଧେୟ ବ୍ୟବହାରର ଆବଶ୍ୟକତା ବିଷୟରେ ପ୍ରଶ୍ନ ପଚାରିଥିଲେ। ପେଚାମହାଶୟ ସେମାନଙ୍କୁ ବୁଝାଇ କହିଲେ--

"ମହାଶୂନ୍ୟରେ ପ୍ରଚଣ୍ଡ ଉତ୍ତାପ ଓ ପ୍ରବଳ ଶୀତର ପ୍ରକୋପ ଅନୁଭୂତ ହୁଏ। ଏହାଛଡ଼ା ଶରୀର ପାଇଁ କ୍ଷତିକାରକ ରଞ୍ଜନ ରଶ୍ମି (X Ray) ଓ ଗାମା ରଶ୍ମି (Gama Ray) ଇତ୍ୟାଦି ମହାଶୂନ୍ୟକୁ ଘେରି ରହିଛି। ଏ ଗୁଡ଼ିକର କୁପ୍ରଭାବରୁ ବ୍ୟୋମଚାରୀମାନଙ୍କୁ ରକ୍ଷା କରିବାକୁ ଏ ସବୁ ସ୍ୱତନ୍ତ୍ର ପୋଷାକପତ୍ର ଆବଶ୍ୟକ। ତୁମ୍ଭମାନଙ୍କର ମହାକାଶ ପୋଷାକ (Space Suit) ଗୁଡ଼ିକ ଏକୋଇଶଟି ପରସ୍ତରେ ତିଆରି ହୋଇଛି। ସେଥିପାଇଁ ସେଗୁଡ଼ିକ ଏପରି ଓଜନିଆ ଲାଗୁଛି। ହସ୍ତାଭରଣ ବା ଦାସ୍ତାନ୍ (Gloves) ଗୁଡ଼ିକ ଅତି ସ୍ଥୂଳ ଓ ତାହା ତୁମର ହାତ ଗୁଡ଼ିକ ଘୋଡ଼ାଇ ସୁରକ୍ଷିତ କରିବ। ମୁଖ ଓ ମସ୍ତକକୁ ଘୋଡ଼ାଇ ରକ୍ଷା କରିବା ପାଇଁ ଶିରାଭରଣ (Helmet) ବ୍ୟବହାର କରୁଛ। ତୁମ ଶିରାଭରଣର (Helmet) ସମ୍ମୁଖଭାଗରେ ଦୁଇ ପରସ୍ତ ସ୍ୱତନ୍ତ୍ର ଧରଣର କାଚ ଖଞ୍ଜା ହେଇଛି ଯାହା ସୂର୍ଯ୍ୟଙ୍କର ଅତ୍ୟୁଜ୍ଜ୍ୱଳ ଆଲୋକକୁ ଅବରୋଧ କରିବାଦ୍ୱାରା ତୁମ୍ଭମାନଙ୍କର ଆଖି ଝଲକା ହେବନାହିଁ। ତେଣୁ ତୁମମାନଙ୍କ ଦୃଷ୍ଟିଶକ୍ତିରେ ବାଧା ସୃଷ୍ଟି ହେବ ନାହିଁ।"

ମାଛ, କାଉ ଓ ଠେକୁଆ, ଶୂନ୍ୟାକାଶ ପୋଷାକପତ୍ର ପିନ୍ଧି ସାରିଲା ପରେ, ପେଚା ମହାଶୟ ଯାନ ମଧ୍ୟସ୍ଥ ଅମ୍ଳଯାନ ଡ଼ିବା (Oxygen Tank) ସଂଯୁକ୍ତ ଏକ ଏକ ଦୀର୍ଘ ନଳୀ (Umblical Cord) ଓ ଏକ ଏକ ସୁନେଲି ରଙ୍ଗର ଦଉଡ଼ି (Tether) ପ୍ରତ୍ୟେକ ପଶୁପକ୍ଷୀ ବ୍ୟୋମଚାରୀଙ୍କ ପୋଷାକରେ ଲଗାଇ ଦେଇଥିଲେ। ଏହାଛଡ଼ା ଆକସ୍ମିକ ବ୍ୟବହାର ପାଇଁ, ସେମାନଙ୍କର ପୋଷାକ ଆଗରେ ଛୋଟ ଅମ୍ଳଜାନପୂର୍ଣ୍ଣ ଡ଼ବାଟିମାନ (Oxygen pack) ସଂଯୁକ୍ତ କରି ଦେଇଥିଲେ। ପଶୁପକ୍ଷୀମାନଙ୍କୁ ଅମ୍ଳଜାନ ନଳୀ, ଦଉଡ଼ି ଓ ଛୋଟ ଅମ୍ଳଜାନ ଡ଼ବା ଗୁଡ଼ିକର ପ୍ରୟୋଜନୀୟତା ସମ୍ବନ୍ଧରେ ବୁଝାଇ ପେଚା ମହାଶୟ କହିଲେ-

"ମହାଶୂନ୍ୟ ବାୟୁହୀନ। ତେଣୁ ତୁମ୍ଭମାନଙ୍କ ଶ୍ୱାସକ୍ରିୟା ପାଇଁ ଯାନର ଅମ୍ଳଜାନ ଡ଼ିବା ସହ ସଂଯୁକ୍ତ ଏ ନଳୀଗୁଡ଼ିକ ଅମ୍ଳଜାନ ଯୋଗାଇବ। ଆଉ ମଧ୍ୟ ଏହା ତୁମ୍ଭମାନଙ୍କର ପୋଷାକ ମଧ୍ୟସ୍ଥ ବାୟୁଚାପ ନିୟନ୍ତ୍ରିତ କରିବା ଦ୍ୱାରା ତୁମର ଶରୀରର ଉତ୍ତାପ ସ୍ୱାଭାବିକ ଅବସ୍ଥାରେ ରହିବ। ପୁଣି ଏ ସୁନେଲି ରଙ୍ଗର ଦଉଡ଼ିଗୁଡ଼ିକ ତୁମକୁ ଯାନ ସହିତ ବାନ୍ଧି ରଖି ତୁମକୁ ମହାଶୂନ୍ୟରେ ଦୂରକୁ

ଭାସିଯିବାକୁ ଦେବ ନାହିଁ। ଯଦି ଦୈବାତ୍ ତୁମ୍ଭର ଅମ୍ଳଜାନ ନଳୀଗୁଡ଼ିକ ଅକାମୀ ହୋଇଯାଏ, ତେବେ ତୁମ ପୋଷାକ ସାମ୍ନାର ଛୋଟ ଅମ୍ଳଜାନ ଡ଼ିବାରୁ, ତୁମେ ଅନ୍ତତଃ ୧୦ ମିନିଟ୍ ପାଇଁ ଅମ୍ଳଜାନ ପାଇ ପାରିବ''।

ପେଚା ମହାଶୟ, କାଉ, ମାଛ ଓ ଠେକୁଆକୁ ଏକ ଏକ ଅମ୍ଳଜାନଚାଳିତ ବନ୍ଧୁକ ମଧ ଦେଇଥିଲେ। ପ୍ରତ୍ୟେକ ବନ୍ଧୁକରେ ତିନୋଟି ଲେଖାଏ ନଳ ଲାଗିଥିଲା ଓ ସେଥିରେ ଗୋଟିଏ ଲେଖାଏଁ କ୍ଷୁଦ୍ର ଅମ୍ଳଜାନ ଡ଼ିବା ଲାଗିଥିଲା। ପେଚା ମହାଶୟ ବନ୍ଧୁକର ବ୍ୟବହାର ସମ୍ବନ୍ଧରେ ବୁଝାଇ କହିଲେ।

''ମହାକାଶରେ ତୁମ୍ଭେମାନେ ଚାଲବୁଲ (Space walk) କଲାବେଳେ, ଦିଗ ପରିବର୍ତ୍ତନ କରିବାକୁ ଇଚ୍ଛାକଲେ, ଏହି ଅମ୍ଳଜାନ ଚାଳିତ ବନ୍ଧୁକକୁ ବିପରିତ ଦିଗକୁ ଫୁଟାଇଲେ, ତାହାର ଚାପଦ୍ୱାରା ତୁମେ ଦିଗ ପରିବର୍ତ୍ତନ କରି ପାରିବ। ଅର୍ଥାତ୍ ବନ୍ଧୁକଟି ଆଗକୁ ଫୁଟାଇଲେ ତୁମେ ପଛକୁ ପେଲି ହୋଇ ଘୁଞ୍ଚିଯାଇ ପାରିବ। ବାଁ ପଟକୁ ଫୁଟାଇଲେ ଡ଼ାହାଣକୁ ଘୁଞ୍ଚିପାରିବ''।

ପେଚା ମହାଶୟ ବୁଝାଇବା ଶେଷ କରି, ଯାନ ମଧରେ ପ୍ରବାହିତ ଅମ୍ଳଯାନକୁ ସ୍ଥାନାନ୍ତରୀତ କରି ଅମ୍ଳଜାନ ଡ଼ିବା ମଧ୍ୟରେ ପୂରାଇଥିଲେ। ଯାନ ଭିତର ବାୟୁଶୂନ୍ୟ ହୋଇ ଅବିକଳ ମହାଶୂନ୍ୟ ଭଳି ଫାଙ୍କା ହୋଇଗଲା।

ଯଥା ସମୟରେ, ପେଚାମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ, ରକେଟର ଦ୍ୱାର ଖୋଲା ହେଲା। ଖୁବ୍ ସାବଧାନତା ସହ ପ୍ରଥମେ କାଉ ଓ ପରେ ପରେ ମାଛ ଓ ଠେକୁଆ ଯାନ ବାହାରକୁ ବାହାରି ଆସିଲେ। କାଉ ଖୁବ୍ ଦମ୍ଭରେ ପାଦ ପକାଇ ଚାଲିବାକୁ ଚେଷ୍ଟା କଲା। ମାଛ ଓ ଠେକୁଆ ଦୁହେଁ କାଉକୁ ଅନୁସରଣ କରି ଚାଲିବାକୁ ଚେଷ୍ଟା କଲେ। କିନ୍ତୁ ତିନିଜଣ ଯାକ ଅସହାୟ ଭାବେ ଯାନ ପାଖରୁ ଦୂରକୁ ଭାସି ଚାଲିଲେ।

ପଶୁପକ୍ଷୀଙ୍କ ଯାନର ଉର୍ଦ୍ଧ୍ୱଭାଗରେ ଏକ ଭାସମାନ ବସ୍ତୁ କାଉର ଦୃଷ୍ଟିଗୋଚର ହେଲା। ବସ୍ତୁଟିର ଦୁଇ ପାଖରୁ ଦୁଇଟି ଲମ୍ବା ବାହୁ ପ୍ରସାରିତ ହୋଇ ରହିଥିଲା। ବସ୍ତୁଟିକୁ ଦେଖି, କାଉ ଭୀତତ୍ରସ୍ତ ହୋଇ ତାର ସାଥି ଠେକୁଆ ଓ ମାଛକୁ, ତାର ଟୋପି (Helmet) ମଧରେ ଖଞ୍ଜା ହୋଇଥିବା ବେତାର ଯୋଗାଯୋଗ ଦ୍ୱାରା କହି ଉଠିଲା --

''ହେ ଧୀରଚ ଭାଇ,... ଶ୍ୱେତାଙ୍ଗ ଭାଇ, ଉପରକୁ ଚାହିଁ ଦେଖ। ଏକ ଭୟଙ୍କର ଶୂନ୍ୟାକାଶଚାରୀ ଜୀବ ବାହୁ ମେଲାଇ ଆମରି ଆଡ଼କୁ ମାଡ଼ି ଆସୁଛି।''

ମାଛ ଓ ଠେକୁଆ ଦୁହେଁ କାଉ କଥା ଶୁଣି ଉପରକୁ ଚାହିଁ ଭାସମାନ ବସ୍ତୁଟିକୁ ଦେଖି ଭୟରେ କମ୍ପିବାକୁ ଲାଗିଲେ।

ସେମାନେ ସମସ୍ତେ ଅସ୍ତବ୍ୟସ୍ତ ହୋଇ, ଯାନ ନିକଟକୁ ଫେରିଯିବା ପାଇଁ ନିଜ ନିଜର ଅମ୍ଳଜାନ ବନ୍ଧୁକ ଗୁଡ଼ିକ ଲକ୍ଷ୍ୟହୀନ ଭାବେ ଘନ ଘନ ଫୁଟାଇ ଚାଲିଲେ। କିଛି କ୍ଷଣ ପରେ, ବନ୍ଧୁକ ଗୁଡ଼ିକ ଅମ୍ଳଜାନ ଶୂନ୍ୟ ହୋଇ ଅକାମୀ ହୋଇଗଲା। ତଥାପି ସେମାନେ ଯାନ ନିକଟରେ ପହଞ୍ଚି ପାରିନଥିଲେ। ବରଂ ଯାନଠାରୁ ଦୂରକୁ ଭାସି ଚାଲିଲେ। କିନ୍ତୁ ପୋଷାକରେ ଲଗା ହୋଇଥିବା ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ ଦ୍ୱାରା ଟାଣି ହୋଇ ସେମାନଙ୍କର ଦୂରକୁ ଭାସିଯିବା ହଠାତ୍ ବନ୍ଦ୍ ହୋଇଗଲା।

ଭାସିଯିବାକୁ ଦେବ ନାହିଁ। ଯଦି ଦୈବାତ୍ ତୁମର ଅମ୍ଳଜାନ ନଳୀଗୁଡ଼ିକ ଅକାମୀ ହୋଇଯାଏ, ତେବେ ତୁମ ପୋଷାକ ସାମ୍ନାର ଛୋଟ ଅମ୍ଳଜାନ ଡ଼ିବାରୁ, ତୁମେ ଅନ୍ତତଃ ୧୦ ମିନିଟ୍ ପାଇଁ ଅମ୍ଳଜାନ ପାଇ ପାରିବ''।

ପେଚା ମହାଶୟ, କାଉ, ମାଛ ଓ ଠେକୁଆକୁ ଏକ ଏକ ଅମ୍ଳଜାନଚାଳିତ ବନ୍ଧୁକ ମଧ୍ଯ ଦେଇଥିଲେ। ପ୍ରତ୍ୟେକ ବନ୍ଧୁକରେ ତିନୋଟି ଲେଖାଏ ନଳ ଲାଗିଥିଲା ଓ ସେଥିରେ ଗୋଟିଏ ଲେଖାଏଁ କ୍ଷୁଦ୍ର ଅମ୍ଳଜାନ ଡ଼ିବା ଲାଗିଥିଲା। ପେଚା ମହାଶୟ ବନ୍ଧୁକର ବ୍ୟବହାର ସମ୍ବନ୍ଧରେ ବୁଝାଇ କହିଲେ।

''ମହାକାଶରେ ତୁମ୍ଭେମାନେ ଚାଲବୁଲ (Space walk) କଲାବେଳେ, ଦିଗ ପରିବର୍ତ୍ତନ କରିବାକୁ ଇଚ୍ଛାକଲେ, ଏହି ଅମ୍ଳଜାନ ଚାଳିତ ବନ୍ଧୁକକୁ ବିପରିତ ଦିଗକୁ ଫୁଟାଇଲେ, ତାହାର ଚାପଦ୍ୱାରା ତୁମେ ଦିଗ ପରିବର୍ତ୍ତନ କରି ପାରିବ। ଅର୍ଥାତ୍ ବନ୍ଧୁକଟି ଆଗକୁ ଫୁଟାଇଲେ ତୁମେ ପଛକୁ ପେଲି ହୋଇ ଘୁଞ୍ଚିଯାଇ ପାରିବ। ବାଁ ପଟକୁ ଫୁଟାଇଲେ ଡ଼ାହାଣକୁ ଘୁଞ୍ଚିପାରିବ''।

ପେଚା ମହାଶୟ ବୁଝାଇବା ଶେଷ କରି, ଯାନ ମଧ୍ୟରେ ପ୍ରବାହିତ ଅମ୍ଳଯାନକୁ ସ୍ଥାନାନ୍ତରୀତ କରି ଅମ୍ଳଜାନ ଡ଼ିବା ମଧ୍ୟରେ ପୂରାଇଥିଲେ। ଯାନ ଭିତର ବାୟୁଶୂନ୍ୟ ହୋଇ ଅବିକଳ ମହାଶୂନ୍ୟ ଭଳି ଫାଙ୍କା ହୋଇଗଲା।

ଯଥା ସମୟରେ, ପେଚାମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ, ରକେଟର ଦ୍ୱାର ଖୋଲା ହେଲା। ଖୁବ୍ ସାବଧାନତା ସହ ପ୍ରଥମେ କାଉ ଓ ପରେ ପରେ ମାଛ ଓ ଠେକୁଆ ଯାନ ବାହାରକୁ ବାହାରି ଆସିଲେ। କାଉ ଖୁବ୍ ଦମ୍ଭରେ ପାଦ ପକାଇ ଚାଲିବାକୁ ଚେଷ୍ଟା କଲା। ମାଛ ଓ ଠେକୁଆ ଦୁହେଁ କାଉକୁ ଅନୁସରଣ କରି ଚାଲିବାକୁ ଚେଷ୍ଟା କଲେ। କିନ୍ତୁ ତିନିଜଣ ଯାକ ଅସହାୟ ଭାବେ ଯାନ ପାଖରୁ ଦୂରକୁ ଭାସି ଚାଲିଲେ।

ପଶୁପକ୍ଷୀଙ୍କ ଯାନର ଉର୍ଦ୍ଧ୍ୱଭାଗରେ ଏକ ଭାସମାନ ବସ୍ତୁ କାଉର ଦୃଷ୍ଟିଗୋଚର ହେଲା। ବସ୍ତୁଟିର ଦୁଇ ପାଖରୁ ଦୁଇଟି ଲମ୍ବା ବାହୁ ପ୍ରସାରିତ ହୋଇ ରହିଥିଲା। ବସ୍ତୁଟିକୁ ଦେଖି, କାଉ ଭୀତତ୍ରସ୍ତ ହୋଇ ତାର ସାଥି ଠେକୁଆ ଓ ମାଛକୁ, ତାର ଟୋପି (Helmet) ମଧ୍ୟରେ ଖଞ୍ଜା ହୋଇଥିବା ବେତାର ଯୋଗାଯୋଗ ଦ୍ୱାରା କହି ଉଠିଲା --

''ହେ ଧୀରଜ ଭାଇ,... ଶ୍ୱେତାଙ୍ଗ ଭାଇ, ଉପରକୁ ଚାହିଁ ଦେଖ। ଏକ ଭୟଙ୍କର ଶୂନ୍ୟାକାଶଚାରୀ ଜୀବ ବାହୁ ମେଲାଇ ଆମରି ଆଡ଼କୁ ମାଡ଼ି ଆସୁଛି।''

ମାଛ ଓ ଠେକୁଆ ଦୁହେଁ କାଉ କଥା ଶୁଣି ଉପରକୁ ଚାହିଁ ଭାସମାନ ବସ୍ତୁଟିକୁ ଦେଖି ଭୟରେ କମ୍ପିବାକୁ ଲାଗିଲେ।

ସେମାନେ ସମସ୍ତେ ଅସ୍ତବ୍ୟସ୍ତ ହୋଇ, ଯାନ ନିକଟକୁ ଫେରିଯିବା ପାଇଁ ନିଜ ନିଜର ଅମ୍ଳଜାନ ବନ୍ଧୁକ ଗୁଡ଼ିକ ଲକ୍ଷ୍ୟହୀନ ଭାବେ ଘନ ଘନ ଫୁଟାଇ ଚାଲିଲେ। କିଛି କ୍ଷଣ ପରେ, ବନ୍ଧୁକ ଗୁଡ଼ିକ ଅମ୍ଳଜାନ ଶୂନ୍ୟ ହୋଇ ଅକାମୀ ହୋଇଗଲା। ତଥାପି ସେମାନେ ଯାନ ନିକଟରେ ପହଞ୍ଚି ପାରିନଥିଲେ। ବରଂ ଯାନଠାରୁ ଦୂରକୁ ଭାସି ଚାଲିଲେ। କିନ୍ତୁ ପୋଷାକରେ ଲଗା ହୋଇଥିବା ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ ଦ୍ୱାରା ଟାଣି ହୋଇ ସେମାନଙ୍କର ଦୂରକୁ ଭାସିଯିବା ହଠାତ୍ ବନ୍ଦ୍ ହୋଇଗଲା।



ମହାକାଶରେ ଶୂନ୍ୟଚାଳି (ପୃଷ୍ଠା ୩୦)



ମହାକାଶ ଯାନ ମଧ୍ୟରୁ ଚନ୍ଦ୍ର ପୃଷ୍ଠର ଦୃଶ୍ୟ (ପୃଷ୍ଠା ୩୭)

କାଉ ବ୍ୟାକୁଳ ହୋଇ ପେଚାମହାଶୟଙ୍କୁ ସମ୍ବୋଧନ କରି ଆରମ୍ଭ କଲା-

''ଜ୍ଞାନୀ ମହାଶୟ ! ଆମକୁ ରକ୍ଷା କରନ୍ତୁ......ଏକ ଭୟଙ୍କର ଶୂନ୍ୟାକାଶଚାରୀ ଜୀବ, ଦୁଇ ହାତ ମେଲାଇ ଆମରି ଦିଗକୁ ମାଡ଼ି ଆସୁଛି। ଆମ୍ଭମାନଙ୍କର ଜୀବନ ସଂକଟାପନ୍ନ ହୋଇ ଉଠିଛି। ଆମ୍ଭମାନଙ୍କ ଅମ୍ଳଜାନ ଚାଳିତ ବନ୍ଧୁକ ଗୁଡ଼ିକ ଅକର୍ମଣ୍ୟ ହୋଇଯାଇଛି। ଯାନ ନିକଟକୁ ଫେରି ଆସିବାର ଉପାୟ ଆମର ନାହିଁ। ଆମକୁ ଶୀଘ୍ର ଉଦ୍ଧାର କରନ୍ତୁ।''

ପେଚାମହାଶୟ କାଉର ଆକୁଳ ଡ଼ାକ ଶୁଣି ବେତାର ଯୋଗେ କହିଲେ :-

''ଏଠି ମହାକାଶରେ ସେପରି କୌଣସି ଜୀବର ସମ୍ଭାବନା ନାହିଁ। ତୁମେ ଉର୍ଦ୍ଧ୍ୱାକାଶରେ ଯେଉଁ ବସ୍ତୁ ଦେଖୁଛ, ତାହା ମୁଁ ମଧ୍ୟ ଯାନ ମଧ୍ୟରୁ ଦେଖିପାରୁଛି। ସେ ବସ୍ତୁ, ମାନବ ନିର୍ମିତ ଏକ କୃତ୍ରିମ ଉପଗ୍ରହ ଓ ତାହା ଅନ୍ୟ ଏକ ପରିକ୍ରମଣ ପଥରେ, ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମା କରୁଛି। ମାନବ ନିର୍ମିତ ଏହିପରି ବହୁତ ଗୁଡ଼ିଏ କୃତ୍ରିମ ଉପଗ୍ରହ ପୃଥିବୀର ଉର୍ଦ୍ଧ୍ୱଭାଗରେ, ବିଭିନ୍ନ ପରିକ୍ରମଣ ପଥରେ ଘୂରି ବୁଲୁଛନ୍ତି। ତେଣୁ ତୁମ୍ଭେମାନେ ନିଶ୍ଚିନ୍ତ ରୁହ। ବର୍ତ୍ତମାନ ଯାନ ନିକଟକୁ ଫେରିବାର ଏକମାତ୍ର ଉପାୟ ହେଲା- ତୁମ୍ଭମାନଙ୍କର ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ। ସେଗୁଡ଼ିକୁ ଧରି ଧରି, ଧୀରେ ଧୀରେ ଯାନ ନିକଟକୁ ଅଗ୍ରସର ହେବାକୁ ଚେଷ୍ଟା କର। ଏହା ଖୁବ୍ ସହଜ ଉପାୟ ନୁହେଁ। କିନ୍ତୁ ଚେଷ୍ଟା କଲେ ତୁମେ ଏ କାର୍ଯ୍ୟରେ ସଫଳ ହୋଇ ପାରିବ।''

ପେଚା ମହାଶୟଙ୍କ କଥା ଅନୁଯାୟୀ, ପଶୁପକ୍ଷୀ ତିନିଜଣ, ନିଜ ନିଜର ପୋଷାକ ସଂଲଗ୍ନ ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ ଧରି ଧରି ଯାନ ଦିଗକୁ ଅଗ୍ରସର ହେବାକୁ ଚେଷ୍ଟା କଲେ। କିନ୍ତୁ ସେମାନେ ଯେତେ ଚେଷ୍ଟା କଲେ ମଧ୍ୟ, ସେମାନଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରିବର୍ତ୍ତେ ଅନ୍ୟ ସବୁ ଆଡ଼କୁ ଭାସି ଯିବାକୁ ଲାଗିଲେ। କିଛି ସମୟ ବହୁ ଚେଷ୍ଟା କରି ଅବଶେଷରେ ପଶୁପକ୍ଷୀ ତିନିଜଣ, ଯାନ ନିକଟରେ ଉପସ୍ଥିତ ହେଲେ। ପେଚାମହାଶୟଙ୍କୁ ଧନ୍ୟବାଦ ଦେଇ, ସେମାନେ ସେହି ଯାନ ପାଖରେ ଓ ତାର ଚତୁର୍ଦ୍ଦିଗରେ ଭାସି ବୁଲି ଶୂନ୍ୟ ଭ୍ରମଣ କରିବାକୁ ଲାଗିଲେ। ପଶୁପକ୍ଷୀ ବ୍ୟୋମଚାରୀ ମାନେ ପୃଥିବୀ ପୃଷ୍ଠରୁ ବହୁ ଉର୍ଦ୍ଧ୍ୱରେ ଶୂନ୍ୟଚାଳି କରୁଥିଲେ ମଧ୍ୟ ଭୂପୃଷ୍ଠର ରାସ୍ତା ଘାଟଗୁଡ଼ିକ କେତେକାଂଶରେ ଦେଖିପାରୁଥିଲେ।

''ଉ....ଉ....ଉ....କି ଅପୂର୍ବ ଦୃଶ୍ୟ ଏ !! ମୋ ଜୀବନରେ ଏପରି ଦୃଶ୍ୟ, ପୃଥିବୀର ସବୁଠାରୁ ଡେଙ୍ଗା ତାଳଗଛ ଉପରୁ ମଧ୍ୟ ଦେଖିବାକୁ ପାଇନଥିଲି'' କାଉ କହି ଉଠିଲା।

ଗାଢ଼ କୃଷ୍ଣ ବର୍ଣ୍ଣର ମହାକାଶ ସହ, ଉଜ୍ଜ୍ୱଳ ନୀଳ ରଙ୍ଗର ପୃଥିବୀସୀମାନ୍ତ ମିଳନର ଦିବ୍ୟ ଜ୍ୟୋତି ଦେଖି ସମସ୍ତ ପଶୁପକ୍ଷୀ ମୁଗ୍ଧ ହୋଇଗଲେ। କିଛି ସମୟ ପରେ ପେଚାମହାଶୟ, ପଶୁପକ୍ଷୀଙ୍କୁ ଯାନ ମଧ୍ୟକୁ ଫେରି ଆସିବାକୁ ନିର୍ଦ୍ଦେଶ ଦେଲେ। ସମସ୍ତେ ପେଚାମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ ଯାନ ମଧ୍ୟକୁ ପ୍ରବେଶ କଲେ। ଯାନ ଦ୍ୱାର ବନ୍ଦ ହେଲା। ପେଚାମହାଶୟ ଯାନ ମଧ୍ୟରେ ଅମ୍ଳଜାନ ଭରି, ବାୟୁଚାପକୁ ପୂର୍ବ ପରି ସ୍ୱାଭାବିକ ଅବସ୍ଥାକୁ ଫେରାଇ ଆଣିଥିଲେ। ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ, ନିଜ ନିଜର ପୋଷାକପତ୍ର ଓ ଟୋପି ଇତ୍ୟାଦି ଓହ୍ଲାଇ ରଖି ନିଜ ନିଜ ସ୍ଥାନରେ ବସିଲେ।

କିଛି କ୍ଷଣପରେ ହଠାତ୍ ସୂର୍ଯ୍ୟ ଅସ୍ତ ହୋଇ ଗଲେ ଓ ଅନ୍ଧାର ମାଡ଼ି ଆସିଲା। ଏତେ ଶୀଘ୍ର ସୂର୍ଯ୍ୟାସ୍ତ ହେବା ଦେଖି ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ସାମାନ୍ୟ ବିବ୍ରତ ହୋଇ ଉଠିଲେ।

କାଉ ବ୍ୟାକୁଳ ହୋଇ ପେଚାମହାଶୟଙ୍କୁ ସମ୍ବୋଧନ କରି ଆରମ୍ଭ କଲା-

''ଜ୍ଞାନୀ ମହାଶୟ! ଆମକୁ ରକ୍ଷା କରନ୍ତୁ......ଏକ ଭୟଙ୍କର ଶୂନ୍ୟାକାଶଚାରୀ ଜୀବ, ଦୁଇ ହାତ ମେଲାଇ ଆମରି ଦିଗକୁ ମାଡ଼ି ଆସୁଛି। ଆମ୍ଭମାନଙ୍କର ଜୀବନ ସଂକଟାପନ୍ନ ହୋଇ ଉଠିଛି। ଆମ୍ଭମାନଙ୍କ ଅମ୍ଳଜାନ ଚାଳିତ ବନ୍ଧୁକ ଗୁଡ଼ିକ ଅକର୍ମଣ୍ୟ ହୋଇଯାଇଛି। ଯାନ ନିକଟକୁ ଫେରି ଆସିବାର ଉପାୟ ଆମର ନାହିଁ। ଆମକୁ ଶୀଘ୍ର ଉଦ୍ଧାର କରନ୍ତୁ।''

ପେଚାମହାଶୟ କାଉର ଆକୁଳ ଡ଼ାକ ଶୁଣି ବେତାର ଯୋଗେ କହିଲେ :-

''ଏଠି ମହାକାଶରେ ସେପରି କୌଣସି ଜୀବର ସମ୍ଭାବନା ନାହିଁ। ତୁମେ ଉର୍ଦ୍ଧ୍ୱାକାଶରେ ଯେଉଁ ବସ୍ତୁ ଦେଖୁଛ, ତାହା ମୁଁ ମଧ ଯାନ ମଧ୍ୟରୁ ଦେଖିପାରୁଛି। ସେ ବସ୍ତୁ, ମାନବ ନିର୍ମିତ ଏକ କୃତ୍ରିମ ଉପଗ୍ରହ ଓ ତାହା ଅନ୍ୟ ଏକ ପରିକ୍ରମଣ ପଥରେ, ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମା କରୁଛି। ମାନବ ନିର୍ମିତ ଏହିପରି ବହୁତ ଗୁଡ଼ିଏ କୃତ୍ରିମ ଉପଗ୍ରହ ପୃଥିବୀର ଉର୍ଦ୍ଧ୍ୱଭାଗରେ, ବିଭିନ୍ନ ପରିକ୍ରମଣ ପଥରେ ଘୂରି ବୁଲୁଛନ୍ତି। ତେଣୁ ତୁମ୍ଭେମାନେ ନିଶ୍ଚିନ୍ତ ରୁହ। ବର୍ତ୍ତମାନ ଯାନ ନିକଟକୁ ଫେରିବାର ଏକମାତ୍ର ଉପାୟ ହେଲା- ତୁମ୍ଭମାନଙ୍କର ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ। ସେଗୁଡ଼ିକୁ ଧରି ଧରି, ଧୀରେ ଧୀରେ ଯାନ ନିକଟକୁ ଅଗ୍ରସର ହେବାକୁ ଚେ଼ଷ୍ଟା କର। ଏହା ଖୁବ୍ ସହଜ ଉପାୟ ନୁହେଁ। କିନ୍ତୁ ଚେଷ୍ଟା କଲେ ତୁମେ ଏ କାର୍ଯ୍ୟରେ ସଫଳ ହୋଇ ପାରିବ।''

ପେଚା ମହାଶୟଙ୍କ କଥା ଅନୁଯାୟୀ, ପଶୁପକ୍ଷୀ ତିନିଜଣ, ନିଜ ନିଜର ପୋଷାକ ସଂଲଗ୍ନ ସୁନେଲି ରଙ୍ଗର ଦଉଡ଼ି ଗୁଡ଼ିକ ଧରି ଧରି ଯାନ ଦିଗକୁ ଅଗ୍ରସର ହେବାକୁ ଚେଷ୍ଟା କଲେ। କିନ୍ତୁ ସେମାନେ ଯେତେ ଚେଷ୍ଟା କଲେ ମଧ, ସେମାନଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପରିବର୍ତ୍ତେ ଅନ୍ୟ ସବୁ ଆଡ଼କୁ ଭାସି ଯିବାକୁ ଲାଗିଲେ। କିଛି ସମୟ ବହୁ ଚେଷ୍ଟା କରି ଅବଶେଷରେ ପଶୁପକ୍ଷୀ ତିନିଜଣ, ଯାନ ନିକଟରେ ଉପସ୍ଥିତ ହେଲେ। ପେଚାମହାଶୟଙ୍କୁ ଧନ୍ୟବାଦ ଦେଇ, ସେମାନେ ସେହି ଯାନ ପାଖରେ ଓ ତାର ଚତୁର୍ଦ୍ଦିଗରେ ଭାସି ବୁଲି ଶୂନ୍ୟ ଭ୍ରମଣ କରିବାକୁ ଲାଗିଲେ। ପଶୁପକ୍ଷୀ ବ୍ୟୋମଚାରୀ ମାନେ ପୃଥିବୀ ପୃଷ୍ଠରୁ ବହୁ ଉର୍ଦ୍ଧ୍ୱରେ ଶୂନ୍ୟଚାଲି କରୁଥିଲେ ମଧ ଭୂପୃଷ୍ଠର ରାସ୍ତା ଘାଟଗୁଡ଼ିକ କେତେକାଂଶରେ ଦେଖିପାରୁଥିଲେ।

''ଉ....ଉ....ଉ....କି ଅପୂର୍ବ ଦୃଶ୍ୟ ଏ!! ମୋ ଜୀବନରେ ଏପରି ଦୃଶ୍ୟ, ପୃଥିବୀର ସବୁଠାରୁ ଡ଼େଙ୍ଗା ତାଳଗଛ ଉପରୁ ମଧ ଦେଖିବାକୁ ପାଇନଥିଲି'' କାଉ କହି ଉଠିଲା।

ଗାଢ଼ କୃଷ୍ଣ ବର୍ଣ୍ଣର ମହାକାଶ ସହ, ଉଜ୍ଜ୍ୱଳ ନୀଳ ରଙ୍ଗର ପୃଥିବୀସୀମାନ୍ତ ମିଳନର ଦିବ୍ୟ ଜ୍ୟୋତି ଦେଖି ସମସ୍ତ ପଶୁପକ୍ଷୀ ମୁଗ୍ଧ ହୋଇଗଲେ। କିଛି ସମୟ ପରେ ପେଚାମହାଶୟ, ପଶୁପକ୍ଷୀଙ୍କୁ ଯାନ ମଧକୁ ଫେରି ଆସିବାକୁ ନିର୍ଦ୍ଦେଶ ଦେଲେ। ସମସ୍ତେ ପେଚାମହାଶୟଙ୍କ ନିର୍ଦ୍ଦେଶ ଅନୁଯାୟୀ ଯାନ ମଧକୁ ପ୍ରବେଶ କଲେ। ଯାନ ଦ୍ୱାର ବନ୍ଦ୍ ହେଲା। ପେଚାମହାଶୟ ଯାନ ମଧରେ ଅମ୍ଳଜାନ ଭରି, ବାୟୁଚାପକୁ ପୂର୍ବ ପରି ସ୍ୱାଭାବିକ ଅବସ୍ଥାକୁ ଫେରାଇ ଆଣିଥିଲେ। ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ, ନିଜ ନିଜର ପୋଷାକପତ୍ର ଓ ଟୋପି ଇତ୍ୟାଦି ଓହ୍ଲାଇ ରଖି ନିଜ ନିଜ ସ୍ଥାନରେ ବସିଲେ।

କିଛି କ୍ଷଣପରେ ହଠାତ୍ ସୂର୍ଯ୍ୟ ଅସ୍ତ ହୋଇ ଗଲେ ଓ ଅନ୍ଧାର ମାଡ଼ି ଆସିଲା। ଏତେ ଶୀଘ୍ର ସୂର୍ଯ୍ୟାସ୍ତ ହେବା ଦେଖି ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ସାମାନ୍ୟ ବିବ୍ରତ ହୋଇ ଉଠିଲେ।

କିନ୍ତୁ, ଶୂନ୍ୟଭ୍ରମଣ କଲାବେଳେ ସେମାନଙ୍କ ଅଜ୍ଞାତରେ ସମୟ ଅତିବାହିତ ହୋଇଗଲା ବୋଲି ଭାବି ଚୁପ୍ ରହିଲେ। କାଉ ରାତି ହୋଇଯିବା ଦେଖି, ହାଇ ମାରୁ ମାରୁ କହିଲା।

''ଶୁଭରାତ୍ରି ବନ୍ଧୁଗଣ.....ମୁଁ ବର୍ତ୍ତମାନ ଶୋଇବାକୁ ଯାଉଛି। ସନ୍ଧ୍ୟା ହେଲା ମାତ୍ରେ, ବିଛଣା ଧରିବା ମୋର ଜନ୍ମଗତ ଅଭ୍ୟାସ।'' ଏପରି କହି କାଉ ଚେୟାର ପଛପଟେ ଥିବା ଶୋଇବା ଘରକୁ ଯାଇ ଶୋଇବାକୁ ଉଦ୍ୟତ ହେଲା। କିନ୍ତୁ ଖଟ କାହିଁ? କାଉ ଚାରିଆଡ଼କୁ ଦୃଷ୍ଟି ପକାଇ ଖୋଜିଲା। ଖଟ ପାଇଲା ନାହିଁ। ପେଚା ମହାଶୟ ସେ ବିଷୟରେ ଜାଣିଥିବେ ଭାବି କାଉ ତାଙ୍କୁ ସମ୍ବୋଧନ କରି କହିଲା ''ଜ୍ଞାନୀ ମହାଶୟ !! ଏଠି ଖଟ ନାହିଁ। ମୁଁ ଶୋଇବି କେଉଁଠି ?''

''ଏ ଯାନ ମଧ୍ୟରେ ଖଟ ପାଇଁ ଜାଗା ନାହିଁ କିମ୍ବା ଶୋଇବା ପାଇଁ ତାର ପ୍ରୟୋଜନ ମଧ୍ୟ ନାହିଁ'' ପେଚାମହାଶୟ କହିଲେ, ''ଯାନର କାନ୍ଥରେ ଝୁଲି ରହିଥିବା ଶୋଇବା ଥଳି କେତୋଟିରୁ, ଗୋଟିଏ ଭିତରେ ପଶିଯାଇ ଆରାମରେ ଶୋଇଯାଅ। ତୁମକୁ ଏହା ଠିଆ ହେବା ଅବସ୍ଥାରେ ଶୋଇଲା ଭଳି ମନେ ହୋଇପାରେ। କିନ୍ତୁ କାନ୍ଥର ଟଙ୍ଗା ହେଲାଭଳି ଶୋଇବା ଓ ଖଟରେ ଶୋଇବା ମଧ୍ୟରେ କୌଣସି ପ୍ରଭେଦ ତୁମେ ଜାଣି ପାରିବ ନାହିଁ। କାରଣ, ମାଧ୍ୟାକର୍ଷଣଶୂନ୍ୟ ପରିବେଶରେ ଉପର ତଳ, ବସିବା, ଛିଡା ହେବା ଓ ଶୋଇବା ଅବସ୍ଥାର ଅନୁଭବ ଏକା ପ୍ରକାରର। ତୁମେ ସେ ଥଳି ଭିତରେ ପଶି ଶୋଇବା ପୂର୍ବରୁ ସେଥିରେ ଲାଗିଥିବା ପଟି ଗୁଡିକ ବାନ୍ଧି ଦେବ ନ ହେଲେ ଶୋଇବା ଅବସ୍ଥାରେ, ସେ ଥଳି ଭିତରୁ ଯାନ ମଧ୍ୟକୁ ଭାସି ଆସିବାର ସମ୍ଭାବନା ରହିଛି।'' ପେଚାମହାଶୟଙ୍କ କହିବା ଅନୁଯାୟୀ କାଉ ଯାନର କାନ୍ଥରେ ଝୁଲୁଥିବା ଥଳି ବିଛଣା ଭିତରେ ପଶିଗଲା ଓ ଆଖିବୁଜି ଶୋଇବାକୁ ଚେଷ୍ଟା କଲା। କିଛି କ୍ଷଣ ପରେ ହଠାତ, ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ଯାନ ମଧ୍ୟରେ ବିଛେଇ ହୋଇ ପଡ଼ିଲା। କାଉ ଆଖି ଖୋଲି ଚାହିଁଲା ଓ ବିଛଣା ଭିତରୁ ଡେଇଁପଡ଼ି ବାହାରି ଆସିଲା।

''କି ଅଦ୍ଭୁତ !!....ଏତେ ଶୀଘ୍ର ସକାଳ ହୋଇଗଲା ?'' କାଉ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ। ''ମୁଁ ନିଶ୍ଚୟ ସ୍ୱପ୍ନ ଦେଖୁଛି କିମ୍ବା ମୋର ମସ୍ତିଷ୍କ ବିକାର ଘଟିଛି। ଏ ଶୂନ୍ୟଚାଲି ମୋ ଉପରେ କୁପ୍ରଭାବ ପକାଇଛି ନିଶ୍ଚୟ'' ସେ ବିବ୍ରତ ହୋଇ ଧୀରେ ଧୀରେ ପେଚାମହାଶୟଙ୍କ ନିକଟକୁ ଅଗ୍ରସର ହୋଇ ଆରମ୍ଭ କଲା।

''ଜ୍ଞାନୀ ମହାଶୟ !!......ଶୂନ୍ୟଚାଲିର ପ୍ରଭାବରୁ, ମୋର ମସ୍ତିଷ୍କ ବିକାର ଘଟିଛି। ମୋର ସମୟ ଜ୍ଞାନ ପୂରା ଲୋପ ହୋଇ ଯାଇଛି। ନ ହେଲେ, ଦିନ ରାତି ଏତେ ଶୀଘ୍ର ଶୀଘ୍ର ବିତିଯିବା ଭଳି ମନେ ହେବାର କାରଣ କଣ ? ମୁଁ କିଛି ବୁଝିପାରୁନି। ଏହା ମୋର ମତିଭ୍ରମ ନିଶ୍ଚୟ। ତେଣୁ, ମୋର ଏ ଶୋଚନୀୟ ଅବସ୍ଥାର କିଛି ପ୍ରତିକାର କରନ୍ତୁ।''

ପେଚାମହାଶୟ କିଛି ନ କହି, ଖିଲ୍ ଖିଲ୍ କରି ହସିଉଠିଲେ।

''ଜ୍ଞାନୀ ମହାଶୟ, ସୁବୋଧ ଭାଇଙ୍କର କଥା ତ କୌତୁକିଆ ମନେ ହେଲାନାହିଁ। ମତେ ଏହା ଅତି ସାଂଘାତିକ ଅବସ୍ଥା ପରି ଜଣା ପଡୁଛି । ଆପଣ ଏପରି ହସିବାର କାରଣ କଣ ମୁଁ ତ ବୁଝିପାରୁନି ?'' ଠେକୁଆ ଆପତ୍ତି କରି କହି ଉଠିଲା।

''ସତ କଥା'', ମାଛ ପାଳି ଧରିଲା ଭଳି କହି ପକାଇଲା, ''ମୋର ମଧ୍ୟ ସୁବୋଧ ଭାଇଙ୍କ ପରି ଅବସ୍ଥା ହୋଇଛି।''

''ହଁ....ହଁ....ଏ ଶୂନ୍ୟଚାଲିର ପ୍ରଭାବ ଆମ ସମସ୍ତଙ୍କର ସମୟ ଜ୍ଞାନ ନଷ୍ଟ କରି ଦେଉଛି। ଫଳରେ ଦିନ ଓ ରାତି ଅତି ଶୀଘ୍ର ଶୀଘ୍ର ହେଉଥିବା ଭଳି ମନେ ହେଉଛି। ଏହା ଅତି ଗୁରୁତର ଅବସ୍ଥା।'' ଠେକୁଆ କହିଲା।

ପେଚାମହାଶୟ ପୂର୍ବଭଳି ହସୁ ହସୁ କହିବା ଆରମ୍ଭ କଲେ, ''ତୁମ୍ଭେମାନେ ଅକାରଣେ ଏପରି ବ୍ୟସ୍ତ ହେଉଛ। ତୁମ୍ଭମାନଙ୍କର ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ପୁରା ସୁରକ୍ଷିତ ଅଛି। ତୁମର ସମୟଜ୍ଞାନ ଆଦୌ ଲୋପ ପାଇନାହିଁ। କାରଣ, ତୁମ୍ଭେମାନେ କହିବା ଭଳି ଛୋଟ ଦିନ ଓ ରାତି ପ୍ରକୃତରେ ଘଟୁଛି। ଆମ୍ଭମାନଙ୍କ ଯାନ ଯେଉଁ ପରିକ୍ରମଣ ପଥରେ ପୃଥିବୀର ଚତୁର୍ଦ୍ଦିଗରେ ଘୂରିବୁଲୁଛି ଏଠି ଦିନ ଓ ରାତିର ଉତ୍ପତ୍ତି ପ୍ରତି ୯୦ ମିନିଟ୍‌ରେ ହେଉଛି। ଦିନ ୪୫ ମିନିଟ୍ ଓ ରାତି ୪୫ ମିନିଟ। ଆମ୍ଭମାନଙ୍କର ଯାନ ଦ୍ରୁତ ଗତିରେ ପୃଥିବୀ ପରିକ୍ରମା କରି ଚାଲିଛି। ତେଣୁ ତୁମ୍ଭେମାନେ ଏକାଧିକ ଥର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଦେଖିବାକୁ ପାଉଛ। ବର୍ତ୍ତମାନ ତୁମ୍ଭେମାନେ ନିଜ ନିଜ ସ୍ଥାନରେ ବସିଯାଇ କମରପଟି ଗୁଡ଼ିକ ବାନ୍ଧିଦିଅ। ଆମେ ଚନ୍ଦ୍ର ଉଦ୍ଦେଶ୍ୟରେ ଯାତ୍ରା କରିବା।'' ପେଚାମହାଶୟଙ୍କ କହିବା ଅନୁସାରେ ପଶୁପକ୍ଷୀମାନେ ନିଜ ନିଜର କମର ପଟିଟିମାନ ବାନ୍ଧି ପ୍ରସ୍ତୁତ ହୋଇଗଲେ। ପେଚାମହାଶୟ ରକେଟ ଫୁଟାଇ ଯାନ ସଂଲଗ୍ନ ତୃତୀୟ ଓ ଶେଷ ଇନ୍ଧନ ଡ଼ିବାଟିରେ ଅଗ୍ନିସଂଚାର କରିବା ଫଳରେ ଯାନଟି ଘଣ୍ଟାକୁ ୪୦,୦୦୦ କିଲୋମିଟର ବେଗରେ ଚନ୍ଦ୍ରାଭିମୁଖେ ଛୁଟି ଚାଲିଲା। ଶେଷରେ ସେହି ଇନ୍ଧନ ଡ଼ିବାଟି ଜଳି ଶେଷ ହୋଇଯିବା ସହ, ତାହା ମହାଶୂନ୍ୟରେ ନିଷ୍କାସିତ ହୋଇଥିଲା।

ଯାତ୍ରା କାଳରେ ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ଓ ପେଚାମହଶୟ ଯାନ ମଧ୍ୟସ୍ଥ ବିଭିନ୍ନ ପଦାର୍ଥ ସଫାସୁତୁରା କରିବା, ନିଜ ନିଜର ଶରୀରର ଯତ୍ନ ନେବା ଓ ଖାଇବା ଇତ୍ୟାଦି ଦୈନନ୍ଦିନ କାର୍ଯ୍ୟ କରି ସମୟ ବିତାଇବାକୁ ଲାଗିଲେ। ସେମାନଙ୍କ ଖାଦ୍ୟ, ଅତି ଛୋଟ ଛୋଟ ଶୁଖିଲା ଖଣ୍ଡ ଓ ଗୁଣ୍ଡ ଆକାରରେ ଥିଲା। ଖାଇବା ପୂର୍ବରୁ, ସେଗୁଡ଼ିକୁ ଜଳରେ ମିଶାଇ ପ୍ଲାଷ୍ଟିକ ବୋତଲ ଦ୍ୱାରା ପାଟି ଭିତରେ ଚିପୁଡ଼ି ଖାଇବାକୁ ପଡୁଥିଲା। ପାନୀୟଗୁଡ଼ିକୁ ମଧ ଏକ ଏକ ପ୍ଲାଷ୍ଟିକ ନଳୀ ସାହାଯ୍ୟରେ ଶୋଷି ଶୋଷି ପିଇବାକୁ ପଡୁଥିଲା। ଅକସ୍ମାତ ଯଦି କୌଣସି ଖାଦ୍ୟ କିମ୍ବା ପାନୀୟ ବୋତଲ ମଧରୁ ବାହାରି ଆସୁଥିଲା,ତେବେ ଖାଦ୍ୟ ପଦାର୍ଥ ମେଞ୍ଚା ମେଞ୍ଚା ହୋଇ ଓ ପାନୀୟ ଗୁଡ଼ିକ ସାନ ବଡ଼ ବୁନ୍ଦା ବା ବୁନ୍ଦ୍ ବୁନ୍ଦ୍ ଆକାରରେ ଯାନ ମଧରେ ଭାସୁଥିଲା। ପଶୁପକ୍ଷୀ ବ୍ୟୋମଚାରୀମାନଙ୍କର ଏ ସବୁ ଖାଦ୍ୟ ପଦାର୍ଥ ପ୍ରତି ଆଗ୍ରହ କମି ଆସିଥିଲା।

''ଜ୍ଞାନୀ ମହାଶୟ....'' ଠେକୁଆ କହିଉଠିଲା, ''ବ୍ୟୋମଚାରୀଙ୍କ ପାଇଁ ପ୍ରସ୍ତୁତ ଏ ଖାଦ୍ୟପେୟ, ଆଦୌ ରୁଚିକର ନୁହେଁ। ଏ ଗୁଡ଼ିକ ପ୍ଲାଷ୍ଟିକ୍ ଟିଉବ୍ ଭିତରେ ଚକଟା ପୁରାଇ ଖାଇବା ଭଳି ଲାଗୁଛି। ଆମେ ଯଦି ଆମର ପ୍ରିୟ ଖାଦ୍ୟ ପଦାର୍ଥ ପୁଡ଼ିଆ ଗୁଡ଼ିକ ସାଙ୍ଗରେ ଆଣି ଥାଆନ୍ତୁ ତେବେ ଏ ସବୁ କାଦୁଅ ଚକଟା ଭଳି ଜିନିଷ ଖାଇବାକୁ ପଡ଼ିନଥାନ୍ତା'' ଠେକୁଆ ଦୀର୍ଘ ନିଃଶ୍ୱାସ ଛାଡ଼ିଲା।

ପେଚାମହାଶୟ ହସି କହିଲେ, ''ତୁମ ସହିତ ମୁଁ ଏକମତ ଯେ, ଏ ଖାଦ୍ୟପେୟ ପ୍ରକୃତରେ ପାଟିକୁ ସୁଆଦିଆ ଲାଗୁନାହିଁ, କିନ୍ତୁ ଏ ଖାଦ୍ୟର ଆକାର କିମ୍ବା ଏହାର ପ୍ରସ୍ତୁତ ପ୍ରଣାଳୀ ଏହାର ଏକମାତ୍ର କାରଣ ନୁହେଁ। ବାସ୍ତବରେ ଆମ୍ଭେମାନେ ଏ ଖାଦ୍ୟପେୟ ଗୁଡ଼ିକୁ ଆଘ୍ରାଣ କରିବାକୁ

ଅସମର୍ଥ ହେଉଛୁ। ଆଘ୍ରାଣ ଦ୍ୱାରା ଖାଦ୍ୟପେୟର ସ୍ୱାଦ ବଢ଼ିଯାଏ। କିନ୍ତୁ ଏ ମାଧ୍ୟାକର୍ଷଣ ଶୂନ୍ୟ ପରିବେଶରେ ଆମ୍ଭମାନଙ୍କର ରକ୍ତ ଶରୀରର ଉର୍ଦ୍ଧ୍ୱଭାଗ ଅର୍ଥାତ୍ ହାତ, ମୁଖ, ନାକ ଓ ମସ୍ତିଷ୍କ ଇତ୍ୟାଦି ଦିଗକୁ ବେଶୀ ପରିମାଣରେ ସଂଚାଳିତ ହେବାଦ୍ୱାରା ଆମ୍ଭମାନଙ୍କର ନାକ ଓ ମୁଖ ଇତ୍ୟାଦିର ଶିରା ପ୍ରଶିରା ଫୁଲିଯାଇ ସର୍ଦ୍ଦି ହେବା ଭଳି ବୋଧ ହେଉଛି । ଫଳରେ ଆମର ଆଘ୍ରାଣଶକ୍ତିରେ ବାଧା ଉପୁଜୁଛି ଓ ଆମେ ଖାଦ୍ୟ ପାନୀୟର ସ୍ୱାଦ ଉପଭୋଗ କରିପାରୁନୁ। କିନ୍ତୁ, ଏ ଚନ୍ଦ୍ର ଅଭିଯାନ ପାଇଁ ଖାଦ୍ୟପେୟ ଗୁଡ଼ିକ ସ୍ୱାଭାବିକ ଅବସ୍ଥାରେ ଆଣିବା ଅସୁବିଧାଜନକ। ସେଗୁଡ଼ିକ ରଖିବାକୁ ଜାଗା ଆବଶ୍ୟକ ଓ ଏ ଯାନ ମଧରେ ଜାଗାର ଅଭାବ। ଆଉ ମଧ, ସେ ଖାଦ୍ୟପେୟ ଅକସ୍ମାତ ଆମ୍ଭମାନଙ୍କର ହାତରୁ ଖସି ଯାନ ମଧରେ ଭାସିବୁଲିଲେ ତାହା ଆମ୍ଭମାନଙ୍କର ଦୃଷ୍ଟି ଶକ୍ତି ଓ ଶ୍ୱାସକ୍ରିୟାରେ ବାଧା ଉପୁଜାଇବା ଦ୍ୱାରା, ଚଳାଚଳ ପାଇଁ ବିପଦଜନକ ହୋଇପାରେ। କିନ୍ତୁ ମୁଁ ଶୁଣିଛି, ଅତି ଶୀଘ୍ର ବ୍ୟୋମଚାରୀଙ୍କ ପାଇଁ ସ୍ୱାଦିଷ୍ଟ ଖାଦ୍ୟପେୟ ପ୍ରସ୍ତୁତ ଓ ତାହା ଉପଭୋଗ କରିପାରିବାର ନୂଆ ବ୍ୟବସ୍ଥା କରାଯାଉଛି।''

ଯାନଟି ଚନ୍ଦ୍ରାଭିମୁଖରେ ଛୁଟି ଚାଲିଥିଲା। ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ ଘଣ୍ଟା ଘଣ୍ଟା ଧରି ଅସ୍ତହୀନ ସୂର୍ଯ୍ୟର ଉଜ୍ଜ୍ୱଳ ଆଲୋକ ଦେଖି ଚାଲିଲେ। ରାତ୍ରିର ଆଗମନକୁ ଅପେକ୍ଷା କରି ସେମାନେ ବ୍ୟସ୍ତ ହୋଇ ଉଠିଲେ ।''ଏ କି ଅଦ୍ଭୁତ ଘଟଣା !! ସୂର୍ଯ୍ୟ, ଅସ୍ତ ହେଉ ନାହାଁନ୍ତି କାହିଁକି ?'' କାଉ ଅଧୈର୍ଯ୍ୟ ହୋଇ କହି ଉଠିଲା ''ଏପରି ଦୀର୍ଘକାଳସ୍ଥାୟୀ ଦିବାଲୋକରେ ଅନିଦ୍ରା ହୋଇ ଚାହିଁ ବସିବା ଅପେକ୍ଷା, ଦୀର୍ଘ ରାତ୍ରିକାଳରେ ଆରାମ୍‌ରେ ଶୋଇ ରହିବାକୁ ମୁଁ ବେଶୀ ପସନ୍ଦ କରେ। ମୁଁ କ୍ଳାନ୍ତ ଓ ଅବଶ ହୋଇ ପଡ଼ିଲିଣି। ବର୍ତ୍ତମାନ କଣ କରିବା ଜ୍ଞାନୀ ମହାଶୟ ?''

''ବର୍ତ୍ତମାନ, ତୁମ୍ଭେମାନେ ସୂର୍ଯ୍ୟଙ୍କର ପ୍ରକୃତ ରୂପ ଦେଖିବାକୁ ପାଉଛ''। ପେଚାମହାଶୟ କହିଲେ। ''ସୃଷ୍ଟି କାଳରୁ, ସୂର୍ଯ୍ୟ ଏହିପରି ଏକ ସ୍ଥାନରେ ଅବସ୍ଥାନ କରି ଆଲୋକ ଓ ଉତ୍ତାପ ବିକିରଣ କରି ଚାଲିଛନ୍ତି। ତୁମ୍ଭେମାନେ, ଚନ୍ଦ୍ରକୁ ଯାତ୍ରା କରି ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରିବା ପର୍ଯ୍ୟନ୍ତ, ଏପରି ଅଖଣ୍ଡ ସୂର୍ଯ୍ୟାଲୋକ ହିଁ ଦେଖିବାକୁ ପାଇବ। ରାତ୍ରିର ଉତ୍ପତ୍ତି କେବଳ ପୃଥିବୀ ଓ ସେପରି ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହର ପୃଷ୍ଠରେ ସମ୍ଭବପର ହୋଇଥାଏ। କିନ୍ତୁ ଆମେ, ପୃଥିବୀ ପୃଷ୍ଠରୁ ବହୁ ଉର୍ଦ୍ଧ୍ୱକୁ ଉଠି ଆସିଛୁ। ପୃଥିବୀ ପୃଷ୍ଠରେ ରାତିର ଉତ୍ପତ୍ତି, ପୃଥିବୀର ନିଜସ୍ୱ ଗତି ଦ୍ୱାରାହିଁ ସୃଷ୍ଟି ହୋଇଥାଏ। ପୃଥିବୀ ତାର ଅକ୍ଷ ବା ମେରୁଦଣ୍ଡର ଚତୁର୍ଦ୍ଦିଗରେ ଘୂରି ବୁଲିବା ସମୟରେ, ସୂର୍ଯ୍ୟଙ୍କ ଆଡ଼କୁ ରହିଥିବା ଭାଗଟିରେ ଦିବାଲୋକ ଓ ତାର ଅପର ପାର୍ଶ୍ୱରେ ଦିବାଲୋକ ବିହୀନ ଅର୍ଥାତ୍ ରାତ୍ରି ସୃଷ୍ଟି ହୋଇଥାଏ। ପୁନଶ୍ଚ, ଅକ୍ଷ ଚ଼ତୁର୍ଦ୍ଦିଗରେ ପରିକ୍ରମଣ ପ୍ରଣାଳୀ କ୍ରମେ ପୃଥିବୀର ଆଲୋକିତ ଭାଗଟିରେ ରାତ୍ରି ହୁଏ ଓ ଅନ୍ଧକାର ଭାଗଟି ସୂର୍ଯ୍ୟଙ୍କର ସମ୍ମୁଖୀନ ହୋଇ ଦିବସରେ ପରିଣତ ହୋଇଥାଏ। ପୃଥିବୀ ତାର ଅକ୍ଷ ଚତୁର୍ଦ୍ଦଗରେ ଥରେ ପରିକ୍ରମା କରିବାର ସମୁଦାୟ ସମୟ ୨୪ ଘଣ୍ଟା। ଦିନ ୧୨ ଘଣ୍ଟା ଓ ରାତି ୧୨ ଘଣ୍ଟା ହୋଇଥାଏ। ଆମେ ପୃଥିବୀର ଉର୍ଦ୍ଧ୍ୱଭାଗରେ ଏ ଉଚ୍ଚତାରେ ନିଜ ଯାନଭିତରେ ଥିବାରୁ ପୃଥିବୀର ଦିବା ରାତ୍ରିକୁ ଆଉ ଦେଖି ପାରୁନାହୁଁ। ଅସ୍ତହୀନ ସୂର୍ଯ୍ୟର ଆଲୋକର ରୋଷଣୀକୁ ହିଁ ବରାବର ଦେଖିବାକୁ ପାଉଛୁ। ଏ ଅବସ୍ଥାରେ ଯଦି ଶୋଇବାକୁ ଇଚ୍ଛାକରୁଛ ତେବେ ଯାନର ଝରକା ଗୁଡିକର ପର୍ଦ୍ଦା ଟାଣି ଦେଇ ଆରାମ୍‌ରେ ଶୋଇ ଯାଅ ।''

''ଏ କି ଅସମ୍ଭବ କଥା ? ଆମ୍ଭେମାନେ, କ୍ଷଣସ୍ଥାୟୀ ଦିନରାତି ଦେଖୁଛୁ କିମ୍ବା ଚିରସ୍ଥାୟୀ ଦିବାଲୋକ ଦେଖୁଛୁ। ଜ୍ଞାନୀ ମହାଶୟ, ପୃଥିବୀର ଉର୍ଦ୍ଧ୍ୱରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ଦିନ ଓ ରାତିର ମିଳିତ ସମୟ ପୃଥିବୀ ଭଳି ୨୪ ଘଣ୍ଟା ?'' କାଉ ପଚାରିଲା।

''ନିଶ୍ଚୟ ଅଛି'' ପେଚାମହାଶୟ କହିଲେ, ''ପୃଥିବୀର ବିଷୁବ ରେଖାର ଉର୍ଦ୍ଧ୍ୱ ଭାଗରେ ୩୫,୦୦୦ କିଲୋମିଟର ଉପରେ ଏକ ପରିକ୍ରମଣ ପଥ ଅବସ୍ଥିତ ଯାହାକୁ ବୈଜ୍ଞାନିକ ମାନେ, ଜିଓସିଂକ୍ରୋନସ ଅରବିଟ (Geosynchronous orbit) ବୋଲି ନାମ ଦେଇଛନ୍ତି। ସେଠି ମାନବ ନିର୍ମିତ ବହୁ କୃତ୍ରିମ ଉପଗ୍ରହ (Communication Satellites)ଅବସ୍ଥାପିତ। ସେଗୁଡ଼ିକ ସାହାଯ୍ୟରେ ପୃଥିବୀରେ ଟେଲିଫୋନ୍, ଟେଲିଭିଜନ ଓ ରେଡ଼ିଓ ବାର୍ତ୍ତା ପ୍ରସାରଣ କରାଯାଏ। ଏହି ପରିକ୍ରମଣ ପଥରେ କୃତ୍ରିମ ଉପଗ୍ରହ ଗୁଡ଼ିକ, ଘଣ୍ଟାକୁ ୧୧,୦୦୦ କିଲୋମିଟର ବେଗରେ, ୨୪ ଘଣ୍ଟାରେ ଥରେ ପୃଥିବୀର ଚତୁର୍ଦ୍ଦିଗରେ ଘୁରିବୁଲୁଛନ୍ତି। କିନ୍ତୁ ସେଠି ଅଧିକାଂଶ ସମୟ ଦିବାଲୋକ।''

''ଯାଃ......... ସବୁ ଭଣ୍ଡୁର୍ ହୋଇଗଲା। ମୋ ପାଇଁ ସେ ପରିକ୍ରମଣ ପଥ ମୂଲ୍ୟହୀନ। ଅଧିକାଂଶ ସମୟ ଦିବାଲୋକ ପରିବର୍ତ୍ତେ ରାତ୍ରିକାଳ ହୋଇଥିଲେ, ତାହା ମୋ କାମକୁ ଆସିଥାଆନ୍ତା''। କାଉ ବିରକ୍ତ ହୋଇ କହି ପକାଇଲା।

ପଶୁପକ୍ଷୀ ବ୍ୟୋମଚାରୀମାନେ, ଯାନ ମଧ୍ୟରେ ମାଧ୍ୟାକର୍ଷଣହୀନ ପରିବେଶରେ, ବିଭିନ୍ନ କାର୍ଯ୍ୟକଳାପ ଗୁଡ଼ିକରେ ଅଭ୍ୟସ୍ତ ହୋଇଯାଇ ଆନନ୍ଦ ଓ ଉତ୍ସାହରେ ଯାତ୍ରାକାଳ ବିତାଇଥିଲେ।

# ପଞ୍ଚମ ପରିଚ୍ଛେଦ

ଚନ୍ଦ୍ରଠାରୁ ୪୮,୦୦୦ କିଲୋମିଟର ଦୂରରୁ ହଠାତ୍ ତାର ମାଧ୍ୟାକର୍ଷଣର ପ୍ରଭାବ ଅନୁଭୂତ ହୋଇଥିଲା। ଏଥର ପଶୁପକ୍ଷୀଙ୍କ ଯାନଟି ଚନ୍ଦ୍ର ଦ୍ୱାରା ଆକୃଷ୍ଟ ହୋଇ ବେଶ୍ ଦ୍ରୁତ ଗତିରେ ଛୁଟି ଚାଲିଲା। ଯାନଟି ଚନ୍ଦ୍ରର ଯେତିକି ଯେତିକି ନିକଟବର୍ତ୍ତୀ ହେଉଥାଏ ଚନ୍ଦ୍ର ପୃଷ୍ଠର ଛୋଟ ବଡ଼ ଗାତ ଗୁଡିକ ସେତିକି ସେତିକି ସ୍ପଷ୍ଟରୁ ସ୍ପଷ୍ଟତର ଦିଶୁଥାଏ।

ଚନ୍ଦ୍ରପୃଷ୍ଠରେ ଗାତ ଗୁଡିକ ଦେଖି, ମାଛ ସେଗୁଡିକୁ ଛୋଟ ବଡ଼ ପୋଖରୀ ବୋଲି ଭାବି ଆନନ୍ଦରେ କୁରୁଳି ଉଠିଲା। ସେ ଭାବିଲା,

''ବାଃ....ଚନ୍ଦ୍ରପୃଷ୍ଠ ମୋ ପାଇଁ ସ୍ୱର୍ଗପୁରୀ ହେବ। ସେଠି ପହଞ୍ଚିଲା ମାତ୍ରେ, ମୁଁ ପାଣି ଭିତରେ ପର, ଲାଞ୍ଜ ମେଲାଇ ପଡିଯିବି। ଆଃ.... ପାଣିର ସେ କୋମଳ, ଶୀତଳ ସ୍ପର୍ଶ ଏତେ ଦୂରରୁ ବି ମୋ ଦେହକୁ ଆନନ୍ଦରେ ଶିରଶିର୍ କରି ଦେଉଛି।''

କାଉ, ନିକଟବର୍ତ୍ତୀ ହୋଇ ଆସୁଥିବା ଚନ୍ଦ୍ରପୃଷ୍ଠ ପ୍ରତି ଦୃଷ୍ଟି ପକାଇ ଭାବିଲା,

''ଚନ୍ଦ୍ରପୃଷ୍ଠ ତ ବିରାଟ, ଖୋଲା ଜାଗା ପରି ଦିଶୁଛି, ବାଃ....ବାଃ....ମଜା କରିବି ମୁଁ। ତିନି ଚାରି ଦିନ ହେଲାଣି ଏ ଛୋଟ ଯାନ ମଧ୍ୟରେ ମୁଁ ଡ଼େଣା ବାନ୍ଧି ବସି ରହିଛି। କିନ୍ତୁ, ଚନ୍ଦ୍ରରେ ଓହ୍ଲାଇବା ମାତ୍ରେ ଛ, ସାତ ଘେରା ଚକର୍ କାଟି, ଉଡି ବୁଲି ଆସବି। ଚନ୍ଦ୍ର ପୃଷ୍ଠରେ ରହିବା ପୂରା ସମୟ, ଖାଲି ଉଡି ବୁଲି ମହା ଆନନ୍ଦରେ କଟାଇବି।''

ଠେକୁଆ, ତା ଆଖିକୁ, ବିଶ୍ୱାସ କରି ପାରିଲା ନାହିଁ ଯେ ସେ ଚନ୍ଦ୍ରର ଏତେ ନିକଟରେ ପହଞ୍ଚିଲାଣି, ଏହି ସେ ଚନ୍ଦ୍ର !!.... ଯାହାକୁ ସେ ଭୂପୃଷ୍ଠରୁ ଦେଖୁଥିଲା । ଯାହାର ସ୍ନିଗ୍ଧଶୀତଳ କିରଣର ସ୍ପର୍ଶ, ତାର ଅଙ୍ଗ ପ୍ରତ୍ୟଙ୍ଗରେ ସୁଖାନନ୍ଦର ଯୁଆର ଖେଳାଇ ଆଣୁଥିଲା । ବର୍ତ୍ତମାନ ସେ ସେହି ଚନ୍ଦ୍ରର ବକ୍ଷରେ ପାଦ ଦେଇ ଓହ୍ଲାଇବ । ଭୂପୃଷ୍ଠରୁ ଉଜ୍ଜ୍ୱଳ ଚନ୍ଦ୍ର ବକ୍ଷରେ ତା ଭଳି ଏକ ଠେକୁଆର ରୂପ ଦେଖିଥିଲା ଓ ସେ ବିଷୟରେ ଗପ ମଧ ଶୁଣିଥିଲା । ଗପର ଠେକୁଆ ଚନ୍ଦ୍ରଦେବଙ୍କୁ ଖୁସି କରିବା ପାଇଁ ଆତ୍ମବଳି ଦେବା ଫଳରେ ଚନ୍ଦ୍ରଦେବ ତାକୁ କୁଆଡେ ନିଜ ବକ୍ଷରେ ସ୍ଥାନ ଦେଇଥିଲେ । ''ତାହେଲେ, ଚନ୍ଦ୍ରଦେବଙ୍କର ମଣିମୁକ୍ତା ଖଚିତ ଅନୁପମ ଉଆସଟି ତ ନିଶ୍ଚୟ ଥିବ ।'' ଠେକୁଆ ଭାବି ଚାଲିଲା । ''ଗପର ଠେକୁଆଟି ନିଶ୍ଚୟ ଚନ୍ଦ୍ରଦେବଙ୍କ ସହିତ ବାସ କରୁଥିବ । ସେ ଅମର ଠେକୁଆଟିକୁ ନିଶ୍ଚୟ ଦେଖି ଆସିବି । ପୃଥିବୀକୁ ଫେରିଗଲେ ମୋ ଜାତିଭାଇଙ୍କୁ ସେ ସବୁ ବର୍ଣ୍ଣନା କରି ଶୁଣାଇବି । ଚନ୍ଦ୍ରଦେବଙ୍କ ଉଆସ କି ବିରାଟ !! କି ଅପୂର୍ବ !! ଚନ୍ଦ୍ରଦେବ କି ସୁନ୍ଦର !! ଗପର ଠେକୁଆ, କି ଅଖଣ୍ଡ ସୁଖ ଶାନ୍ତି ଉପଭୋଗ କରୁଛି !! ...ଇତ୍ୟାଦି, ଇତ୍ୟାଦି'' ଠେକୁଆର ଚିନ୍ତାଧାରା ଲମ୍ୱି ଚାଲିଲା । ଦିବାସ୍ୱପ୍ନରେ ଆତ୍ମବିସ୍ମୃତ ହୋଇ, ନିକଟବର୍ତ୍ତୀ ହୋଇ ଆସୁଥିବା ଚନ୍ଦ୍ର ଦିଗକୁ ଅପଲକ ନେତ୍ରରେ ଚାହିଁ ରହିଲା ।

ପେଚାମହାଶୟ କିନ୍ତୁ ଚନ୍ଦ୍ରପୃଷ୍ଠର ଛୋଟ ବଡ଼ ଅସଂଖ୍ୟ ଗହ୍ୱର ଗୁଡିକର ଫୋଟୋ ଉଠାଇବାରେ ବ୍ୟସ୍ତ ରହିଥିଲେ । କିଛି ସମୟ ଅତିବାହିତ ହୋଇଗଲା । ପଶୁପକ୍ଷୀ ତିନିଜଣଙ୍କ ଦିବାସ୍ୱପ୍ନ ଭଙ୍ଗ କରି ପେଚାମହାଶୟ କହିଉଠିଲେ ।

''ବର୍ତ୍ତମାନ କାର୍ଯ୍ୟବେଳ ହେଇଗଲା । ତୁମ୍ଭେମାନେ ପ୍ରସ୍ତୁତ ରୁହ ।''ଏପରି କହି ପେଚାମହାଶୟ ରକେଟ୍ ଫୁଟାଇ, ଯାନଟି ଚନ୍ଦ୍ରର ଉର୍ଦ୍ଧ୍ୱ ଭାଗସ୍ଥ ଏକ ପରିକ୍ରମଣ ପଥରେ ଅବସ୍ଥାପିତ କରିଥିଲେ । ପଶୁପକ୍ଷୀଙ୍କ ଯାନଟି ଚନ୍ଦ୍ରର ଚତୁର୍ଦ୍ଦିଗରେ ବୃତ୍ତାକାରରେ ପରିକ୍ରମଣ କରିବାକୁ ଲାଗିଲା ।

''ବର୍ତ୍ତମାନ ତୁମ୍ଭେମାନେ ମନ ଧ୍ୟାନ ଦେଇ ଶୁଣ'', ପେଚାମହାଶୟ ଆରମ୍ଭ କଲେ । ''ଏହି ସ୍ଥାନରେ, ଆମ୍ଭମାନଙ୍କୁ ଏକ ନିର୍ଣ୍ଣୟ କରିବାକୁ ପଡିବ । ତାହା ହେଲା, ଆମେ ଚନ୍ଦ୍ରପୃଷ୍ଠରେ ଓହ୍ଲାଇବାର ବନ୍ଦୋବସ୍ତ କରିବା କି ନାହିଁ? କାରଣ ମୁଁ ଜାଣିଛି ଯେ ମାନବ ବ୍ୟୋମଚାରୀଙ୍କ ଯାନ ଆପୋଲୋ ୧୧ ଟି, ତିନୋଟି ଭାଗ ସମ୍ମିଳିତ କରାଯାଇ ନିର୍ମିତ ହୋଇଛି । ପ୍ରଥମ ଭାଗଟିର ନାମ ହେଲା ସର୍ଭିସ ମଡ୍ୟୁଲ୍ (Service Module) । ଦ୍ୱିତୀୟ ଭାଗଟିର ନାମ କମାଣ୍ଡ ମଡ୍ୟୁଲ୍ (Command Module) ଓ ତୃତୀୟ ବା ଶେଷ ଭାଗଟିର ନାମ ଲୁନାର୍ ମଡ୍ୟୁଲ୍ (Lunar Module) । ପ୍ରଥମ ଭାଗ ସର୍ଭିସ୍ ମଡ୍ୟୁଲ୍ ଏକ ଗୋଦାମ ଭଳି । ଏହା ଭିତରେ ଯାନର ମୁଖ୍ୟ ରକେଟ୍ ବା ଇଞ୍ଜିନ୍ ଓ ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥ ଯଥା :-ଜାଳେଣି, ଅମ୍ଳଜାନ, ପାଣି ଓ ବିଦ୍ୟୁତ୍ ଶକ୍ତି ଇତ୍ୟାଦି ଗଚ୍ଛିତ ଅଛି । ଦ୍ୱିତୀୟଭାଗ, କମାଣ୍ଡ ମଡ୍ୟୁଲଟି ଯାନ ନିୟନ୍ତ୍ରଣ କେନ୍ଦ୍ର ଓ ବ୍ୟୋମଚାରୀଙ୍କ ବାସକୋଠରୀ ରୂପେ ବ୍ୟବହୃତ ହୋଇଛି । ଏହି କମାଣ୍ଡ ମଡ୍ୟୁଲ୍ ଦ୍ୱାରା ବ୍ୟୋମଚାରୀମାନେ ଶେଷରେ ପୃଥିବୀ ପୃଷ୍ଠକୁ ଫେରିଯିବେ । ସେଥିପାଇଁ ସମସ୍ତ ବ୍ୟବସ୍ଥା କରାଯାଇଛି । ତୃତୀୟ ବା ଶେଷ ଲୁନାର ମଡ୍ୟୁଲଟିର ଅନ୍ୟନାମ ବୁଢ଼ିଆଣୀ (Spider) । କାରଣ ବାହାରୁ ଏହା କିଛିଟା ବୁଢ଼ିଆଣୀ ଭଳି ଦେଖାଯାଏ । ପୁଣି ଏହା ଆମେରିକାର ରାଷ୍ଟ୍ରୀୟପକ୍ଷୀ ଚିଲ ବା ଇଗଲ୍ (Eagle) ନାମରେ ମଧ ପରିଚିତ । ଏହି ଲୁନାର ମଡ୍ୟୁଲ, ଦୁଇଜଣ ବ୍ୟୋମଚାରୀଙ୍କ ସହ ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ପାଇଁ ସ୍ୱତନ୍ତ୍ର ଭାବେ

ନିର୍ମିତ ହୋଇଛି। ବ୍ୟୋମଚାରୀ ନିଲ୍ ଆର୍ମଷ୍ଟ୍ରଙ୍ଗ୍ ଓ ଏଡ୍‌ୱିନ୍ ଆଲଡ୍ରିନ୍ ଏହି ଲୁନାର୍-ମଡ୍ୟୁଲ୍‌ଟିକୁ, ଯାନର ଅନ୍ୟ ଦୁଇଭାଗରୁ ଅଲଗା କରି ଚନ୍ଦ୍ରପୃଷ୍ଠରେ ଓହ୍ଲାଇବେ। ବ୍ୟୋମଚାରୀ ମାଇକେଲ କଲିନସ୍ ଏକାକୀ କମାଣ୍ଡ୍ ଓ ସର୍ଭିସର ମିଳିତ ଭାଗଟି ଚାଳନ କରି ଚନ୍ଦ୍ରର ଚାରିପଟେ ପରିକ୍ରମା କରି ଅପେକ୍ଷା କରିବେ। ନିଲ୍ ଆର୍ମଷ୍ଟ୍ରଙ୍ଗ୍ ଓ ଏଡ୍‌ୱିନ୍ ଆଲଡ୍ରିନ୍, ଚନ୍ଦ୍ରପୃଷ୍ଠରେ ସେମାନଙ୍କର କାର୍ଯ୍ୟକଳାପ ଶେଷ କରି ଏହି ଲୁନାର୍ ମଡ୍ୟୁଲ୍‌ଦ୍ୱାରା ଉର୍ଦ୍ଧ୍ୱଗାମୀ ହେବେ ଓ କମାଣ୍ଡ ଓ ସର୍ଭିସ୍ ମଡ୍ୟୁଲ୍ ସହ ମିଳିତ ହେବେ। ଏହାପରେ ଶୂନ୍ୟ ଲୁନାର୍-ମଡ୍ୟୁଲ୍‌ଟି ମହାକାଶରେ ତ୍ୟାଗ କରିବେ। ସେମାନେ ପୃଥିବୀକୁ ଫେରିଯିବାକୁ ପ୍ରସ୍ତୁତ ହେଲେ, ସର୍ଭିସ୍ ମଡ୍ୟୁଲ୍‌ଟିକୁ ମଧ୍ୟ ଅଲଗା କରି ମହାଶୂନ୍ୟରେ ପରିତ୍ୟାଗ କରିବେ ଓ କମାଣ୍ଡ ମଡ୍ୟୁଲ୍‌ରେ ପୃଥିବୀ ପ୍ରତ୍ୟାବର୍ତ୍ତନ କରିବେ।

''ଆମ୍ଭମାନଙ୍କର ଯାନଟି ମଧ୍ୟ ସେହିପରି ତିନୋଟି ଭାଗର ସଂଯୋଗରେ ନିର୍ମିତ ହୋଇଛି। ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ପାଇଁ ଆମକୁ ମଧ୍ୟ ଆମ ଲୁନାରମଡ୍ୟୁଲ୍‌ଟିକୁ ଅଲଗା କରିବାକୁ ପଡ଼ିବ। କିନ୍ତୁ ଆମ୍ଭମାନଙ୍କର ସମସ୍ୟା ହେଲା ମୋ ଛଡ଼ା, ତୁମ୍ଭମାନଙ୍କ ମଧ୍ୟରୁ କାହାର ଯାନ ପରିଚାଳନା କରିବାର ଅଭିଜ୍ଞତା କିମ୍ବା ଶିକ୍ଷା ନାହିଁ। ଏପରି ସ୍ଥଳେ କି ଉପାୟ ଅବଲମ୍ବନ କରି ଚନ୍ଦ୍ରପୃଷ୍ଠରେ ଅବତରଣ କରିବା? ମୁଁ ଯଦି କମାଣ୍ଡ ଓ ସର୍ଭିସ ମଡ୍ୟୁଲର ମିଳିତ ଭାଗଟି ଚାଳନ କରି ଚନ୍ଦ୍ରର ଚାରିପଟେ ପରିକ୍ରମା କରି ରହିବି, ତୁମ୍ଭେମାନେ, ଲୁନାରମଡ୍ୟୁଲ୍ ପରିଚାଳନା କରି ଚନ୍ଦ୍ରପୃଷ୍ଠରେ ଓହ୍ଲାଇବାକୁ ସକ୍ଷମ ହେବନାହିଁ। ଅପରପକ୍ଷେ, ମୁଁ ଲୁନାର ମଡ୍ୟୁଲ୍ ପରିଚାଳନା କରି ଚନ୍ଦ୍ର ପୃଷ୍ଠରେ ଓହ୍ଲାଇଲେ ତୁମ ମଧ୍ୟରୁ କେହି ଏ କମାଣ୍ଡ ଓ ସର୍ଭିସ-ମଡ୍ୟୁଲ୍ ଚାଳନ କରିପାରିବ ନାହିଁ। ଆଉ ମଧ୍ୟ ଆମେ ସମସ୍ତେ ଏ ସମୁଦାୟ ଯାନଟି ସହ ଚନ୍ଦ୍ର ପୃଷ୍ଠରେ ଓହ୍ଲାଇବା ସହଜସାଧ୍ୟ ନୁହେଁ। ଯଦିବା ସେପରି କରିବାରେ ସଫଳ ହେଲୁ, ପୁନର୍ବାର ଏ ଓଜନଦାର ଯାନଟିକୁ ଚନ୍ଦ୍ରପୃଷ୍ଠରୁ ଉର୍ଦ୍ଧ୍ୱଗାମୀ କରିବା, ଆମ୍ଭମାନଙ୍କ ପକ୍ଷେ ସମ୍ଭବପର ନୁହେଁ। ଏକ ଶେଷ ଉପାୟ ହେଲା, ଆମେ ସମସ୍ତେ, ଲୁନାର ମଡ୍ୟୁଲଟିକୁ ଅଲଗା କରି ଚନ୍ଦ୍ରପୃଷ୍ଠକୁ ଯିବାକୁ ସ୍ଥିର କଲେ, ସର୍ଭିସ୍ ଓ କମାଣ୍ଡ ମଡ୍ୟୁଲ୍ ଭାଗଟି ଚାଳକ ବିନା ମହାଶୂନ୍ୟରେ ପରିତ୍ୟାଗ କରିବାକୁ ହେବ। କିନ୍ତୁ ଚାଳକ ବିନା ତାହା ସହିତ ଲୁନାର୍ ମଡ୍ୟୁଲ୍‌ଟି ସଂଯୁକ୍ତ କରିବାର ସମ୍ଭାବନା ଅତି କ୍ଷୀଣ। ସର୍ଭିସ୍ ଓ କମାଣ୍ଡ ଭାଗ ବିନା, ଭୂପୃଷ୍ଠକୁ ପ୍ରତ୍ୟାବର୍ତ୍ତନ କରିବାର କୌଣସି ଉପାୟ ନାହିଁ। କାରଣ ଲୁନାର ମଡ୍ୟୁଲର ଛାଞ୍ଚ ଓ ଗଠନ ଅତି ଦୁର୍ବଳ। ଏହା ଭୂପୃଷ୍ଠ ପୁନଃ-ପ୍ରବେଶର ପ୍ରତିକ୍ରିୟା ସହ୍ୟ କରି ତିଷ୍ଠି ରହି ପାରିବ ନାହିଁ। ତେଣୁ, ଏ ପରସ୍ଥିତିରେ ଆମ୍ଭମାନଙ୍କୁ ସ୍ଥିର କରିବାକୁ ହେବ ଯେ, ଚନ୍ଦ୍ରରେ ଅବତରଣ କରିବାର ଆଶା ତ୍ୟାଗ କରି, ଏ ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରିବା କି ଚାଳକ ବିନା ସର୍ଭିସ୍ ଓ କମାଣ୍ଡ ମଡ୍ୟୁଲ୍‌ଟିକୁ ତ୍ୟାଗ କରି, ଲୁନାର ମଡ୍ୟୁଲ୍‌ରେ ଆମେ ସମସ୍ତେ ଚନ୍ଦ୍ର ପୃଷ୍ଠରେ ଅବତରଣ କରିବାର ବନ୍ଦୋବସ୍ତ କରି ବାକିତା ଭାଗ୍ୟ ଉପରେ ଛାଡିଦେବା।'' ପେଚାମହାଶୟ ନୀରବ ରହିଲେ।

''ଆମେ ଏତେ ଦୂର ଆସି ଫେରିଯିବା ଅପେକ୍ଷା ଚନ୍ଦ୍ରକୁ ଯାତ୍ରା କରିବା ଶ୍ରେୟସ୍କର।''

''ମୁଁ ତୁମମାନଙ୍କ ସହ ଏକମତ। ମୋ ସହିତ ଆସ। ପେଚା ମହାଶୟ ଏପରି କହି, ଲୁନାର ଭାଗକୁ ପ୍ରବେଶ କରିବାର ସୁଡ଼ଙ୍ଗ ପଥ ଭଳି ଦ୍ୱାରଟି ଖୋଲି ତା ମଧ୍ୟକୁ ନଇଁ ନଇଁ ପ୍ରବେଶ କରିଥିଲେ। ତାଙ୍କୁ ଅନୁସରଣ କରି ପଶୁପକ୍ଷୀ ତିନିଜଣ ସେପରି କରିଥିଲେ। ଲୁନାର ମଡ୍ୟୁଲ୍‌କୁ ସମସ୍ତେ ପ୍ରବେଶ କଲାପରେ ପେଚାମହାଶୟ ପ୍ରବେଶ ଦ୍ୱାର ବନ୍ଦ୍ କରି, ସେ ଭାଗଟିକୁ

ସର୍ଭିସ୍ ଓ କମାଣ୍ଡ ମଡ୍ୟୁଲ୍‌ରୁ ଅଲଗା କରି ଦେଇଥିଲେ। ମହାକାଶରେ ସର୍ଭିସ୍ ଓ କମାଣ୍ଡର ମିଳିତ ଭାଗଟି ଭାସି ଭାସି ଦୂରେଇ ଗଲା।

ପେଚାମହାଶୟ ଲୁନାର ମଡ୍ୟୁଲ୍ ଚାଳନ କରି ଚନ୍ଦ୍ର ପୃଷ୍ଠକୁ ଅବତରଣ କରି ଚାଲିଲେ। ଲୁନାର ମଡ୍ୟୁଲ୍‌ର ବେଗ ହ୍ରାସ କରିବା ପାଇଁ ରେଟ୍ରୋ ରକେଟ୍ ବା ବିପରୀତ ମୁଖି ଛୋଟ ରକେଟ୍ କେତୋଟି ଫୁଟାଇଥିଲେ। ଟ୍ରେନ୍ ବା କାର୍‌ରେ ବ୍ରେକ୍ ଭଳି ମହାଶୂନ୍ୟରେ ରେଟ୍ରୋରକେଟ୍ (Retro rocket) ଶୂନ୍ୟାକାଶଯାନର ବ୍ରେକ୍ ଭଳି କାମ କରେ। ଫଳରେ ଲୁନାର ମଡ୍ୟୁଲ୍‌ର ବେଗ କମି ଆସି ତାହା ଓଲଟଭାବେ (upside down) ଚନ୍ଦ୍ର ପୃଷ୍ଠକୁ ଓହ୍ଲାଇବାକୁ ଲାଗିଲା। କିଛିକ୍ଷଣ ପରେ ଯନ୍ତ୍ରମସ୍ତିଷ୍କ ବା କମ୍ପ୍ୟୁଟର୍ (Computer) ଉପରେ, ଲୁନାର ମଡ୍ୟୁଲ୍‌ଟିର ପରିଚାଳନାର ସମ୍ପୂର୍ଣ୍ଣ ଭାର ନ୍ୟସ୍ତ କରାଗଲା। କମ୍ପ୍ୟୁଟର୍‌ର, ଦୋଷତ୍ରୁଟିହୀନ ଦକ୍ଷ ପରିଚାଳନା ଦ୍ୱାରା ଲୁନାର୍ ମଡ୍ୟୁଲ୍‌ଟିର ଓଲଟ ଅବସ୍ଥା ପରିବର୍ତ୍ତିତ ହୋଇ, ସିଧା ଭାବେ ଧୀରେ ଧୀରେ ଚନ୍ଦ୍ରପୃଷ୍ଠକୁ ଓହ୍ଲାଇ ଚାଲିଲା। ଲୁନାର୍ ମଡ୍ୟୁଲ୍‌ଟି ଗଛରୁ ଧୀରେ ଧୀରେ ଖସୁଥିବା ଶୁଖିଲା ପତ୍ରଠାରୁ ବି ଆହୁରି କମ୍ ବେଗରେ ନିମ୍ନଗାମୀ ହୋଇ, ଶେଷରେ ଚନ୍ଦ୍ରଭୂମି ଛୁଇଁଲା।

# ଷଷ୍ଠ ପରିଚ୍ଛେଦ

ପଶୁପକ୍ଷୀଙ୍କ କ୍ଷୁଦ୍ରଯାନଟି ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ପରେ ଯାନର ଇଞ୍ଜିନ୍ କିଛି କ୍ଷଣ ପରେ ବନ୍ଦ କରିଦିଆଗଲା। ଯାନ ମଧରେ, ପଶୁପକ୍ଷୀମାନେ ନିସ୍ତବ୍ଧ ରହି ଉତ୍କଣ୍ଠିତଭାବେ ପେଚାମହାଶୟଙ୍କୁ ଚାହିଁରହି ଅପେକ୍ଷା କଲେ। ପେଚାମହାଶୟ ନିଜ କମରପଟି ଖୋଲି ସ୍ୱସ୍ଥାନ ତ୍ୟାଗ କରି ଯାନର ତ୍ରିଭୂଜାକାର ଝରକା ନିକଟକୁ ଯାଇଥିଲେ। କାଉ, ଠେକୁଆ ଓ ମାଛ ମଧ ପେଚାମହାଶୟଙ୍କୁ ଅନୁସରଣ କରିଥିଲେ। ଝରକାର କାଚ ମଧ ଦେଇ ସମସ୍ତ ପଶୁପକ୍ଷୀ ଚନ୍ଦ୍ରପୃଷ୍ଠରେ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ। ସାନ ବଡ଼ ହୋଇ ବହୁତ ପଥର ଖଣ୍ଡ ଚାରିଆଡ଼େ ପଡିଥିଲା। ଭୂମି ଭାଗ, କଳା ଓ ଧଳା ରଙ୍ଗର, ପାଉଡ଼ର ଭଳି ଅତି ସରୁ ସରୁ ଧୂଳିରେ ଭରି ରହିଥିଲା। ଆଖ ପାଖରେ ଛୋଟ ବଡ଼ ପର୍ବତ ଓ ଅସଂଖ୍ୟ ଛୋଟ ବଡ଼ ଗାତ ମଧ ଦୃଷ୍ଟିଗୋଚର ହେଉଥିଲା।

ନିସ୍ତବ୍ଧତା ଭାଙ୍ଗି, ପେଚା ମହାଶୟ କହି ଉଠିଲେ ''ବର୍ତ୍ତମାନ, ଆମେ ହେଲୁ ଚନ୍ଦ୍ର ପୃଷ୍ଠର ପ୍ରଥମ ପଶୁପକ୍ଷୀ ଗଣ।''

କୁଆ, ଠେକୁଆ ଓ ମାଛ ମିଳିତକଣ୍ଠରେ କହି ଉଠିଲେ ''ପଶୁପକ୍ଷୀ ସମାଜର ଜୟ ହେଉ।''

''ବର୍ତ୍ତମାନ ଆମେ କାମ ଆରମ୍ଭ କରିବା। ପ୍ରଥମେ ତୁମେ ସମସ୍ତେ ଯାନ ବାହାରକୁ ଯାଇ ଚନ୍ଦ୍ରର ଆଖପାଖ ଅଞ୍ଚଳ ଦେଖି ଆସିବା ପାଇଁ ପ୍ରସ୍ତୁତ ହୋଇଯାଅ।'' ପେଚା ମହାଶୟ କହିଲେ।

ତାଙ୍କ ନିର୍ଦ୍ଦେଶ ଅନୁଯାୟୀ, ପଶୁପକ୍ଷୀ ତିନିଜଣ ନିଜନିଜର ବ୍ୟୋମଚାରୀ ପୋଷାକପତ୍ର ଓ ଜୀବନ ରକ୍ଷକ ବାକ୍ସ (Life support system) ଇତ୍ୟାଦି ସହ ପ୍ରସ୍ତୁତ ହେବାକୁ ଲାଗିଲେ। ପେଚାମହାଶୟ ପୋଷାକ ପିନ୍ଧିବାରେ ବ୍ୟସ୍ତ ଥିବାବେଳେ, କାଉ ନିଜର ପର ଦୁଇଟି ମେଲାଇ

ସର୍ଭିସ୍ ଓ କମାଣ୍ଡ ମଡ୍ୟୁଲ୍‌ରୁ ଅଲଗା କରି ଦେଇଥିଲେ। ମହାକାଶରେ ସର୍ଭିସ୍ ଓ କମାଣ୍ଡର ମିଳିତ ଭାଗଟି ଭାସି ଭାସି ଦୂରେଇ ଗଲା।

ପେଚାମହାଶୟ ଲୁନାର ମଡ୍ୟୁଲ୍ ଚାଳନ କରି ଚନ୍ଦ୍ର ପୃଷ୍ଠକୁ ଅବତରଣ କରି ଚାଲିଲେ। ଲୁନାର ମଡ୍ୟୁଲ୍‌ର ବେଗ ହ୍ରାସ କରିବା ପାଇଁ ରେଟ୍ରୋ ରକେଟ୍ ବା ବିପରୀତ ମୁଖି ଛୋଟ ରକେଟ୍ କେତୋଟି ଫୁଟାଇଥିଲେ। ଟ୍ରେନ୍ ବା କାର୍‌ରେ ବ୍ରେକ୍ ଭଳି ମହାଶୂନ୍ୟରେ ରେଟ୍ରୋରକେଟ୍ (Retro rocket) ଶୂନ୍ୟାକାଶଯାନର ବ୍ରେକ୍ ଭଳି କାମ କରେ। ଫଳରେ ଲୁନାର ମଡ୍ୟୁଲ୍‌ର ବେଗ କମି ଆସି ତାହା ଓଲଟଭାବେ (upside down) ଚନ୍ଦ୍ର ପୃଷ୍ଠକୁ ଓହ୍ଲାଇବାକୁ ଲାଗିଲା। କିଛିକ୍ଷଣ ପରେ ଯନ୍ତ୍ରମସ୍ତିଷ୍କ ବା କମ୍ପ୍ୟୁଟର୍ (Computer) ଉପରେ, ଲୁନାର ମଡ୍ୟୁଲ୍‌ଟିର ପରିଚାଳନାର ସମ୍ପୂର୍ଣ୍ଣ ଭାର ନ୍ୟସ୍ତ କରାଗଲା। କମ୍ପ୍ୟୁଟର୍‌ର, ଦୋଷତ୍ରୁଟିହୀନ ଦକ୍ଷ ପରିଚାଳନା ଦ୍ୱାରା ଲୁନାର୍ ମଡ୍ୟୁଲ୍‌ଟିର ଓଲଟ ଅବସ୍ଥା ପରିବର୍ତ୍ତିତ ହୋଇ, ସିଧା ଭାବେ ଧୀରେ ଧୀରେ ଚନ୍ଦ୍ରପୃଷ୍ଠକୁ ଓହ୍ଲାଇ ଚାଲିଲା। ଲୁନାର୍ ମଡ୍ୟୁଲ୍‌ଟି ଗଛରୁ ଧୀରେ ଧୀରେ ଖସୁଥିବା ଶୁଖିଲା ପତ୍ରଠାରୁ ବି ଆହୁରି କମ୍ ବେଗରେ ନିମ୍ନଗାମୀ ହୋଇ, ଶେଷରେ ଚନ୍ଦ୍ରଭୂମି ଛୁଇଁଲା।

# ଷଷ୍ଠ ପରିଚ୍ଛେଦ

ପଶୁପକ୍ଷୀଙ୍କ କ୍ଷୁଦ୍ରଯାନଟି ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ପରେ ଯାନର ଇଞ୍ଜିନ୍ କିଛି କ୍ଷଣ ପରେ ବନ୍ଦ କରିଦିଆଗଲା। ଯାନ ମଧ୍ୟରେ, ପଶୁପକ୍ଷୀମାନେ ନିସ୍ତବ୍ଧ ରହି ଉତ୍କଣ୍ଠିତଭାବେ ପେଚାମହାଶୟଙ୍କୁ ଚାହିଁରହି ଅପେକ୍ଷା କଲେ। ପେଚାମହାଶୟ ନିଜ କମରପଟି ଖୋଲି ସ୍ୱସ୍ଥାନ ତ୍ୟାଗ କରି ଯାନର ତ୍ରିଭୂଜାକାର ଝରକା ନିକଟକୁ ଯାଇଥିଲେ। କାଉ, ଠେକୁଆ ଓ ମାଛ ମଧ୍ୟ ପେଚାମହାଶୟଙ୍କୁ ଅନୁସରଣ କରିଥିଲେ। ଝରକାର କାଚ ମଧ୍ୟ ଦେଇ ସମସ୍ତ ପଶୁପକ୍ଷୀ ଚନ୍ଦ୍ରପୃଷ୍ଠରେ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ। ସାନ ବଡ଼ ହୋଇ ବହୁତ ପଥର ଖଣ୍ଡ ଚାରିଆଡ଼େ ପଡିଥିଲା। ଭୂମି ଭାଗ, କଳା ଓ ଧଳା ରଙ୍ଗର, ପାଉଡ଼ର ଭଳି ଅତି ସରୁ ସରୁ ଧୂଳିରେ ଭରି ରହିଥିଲା। ଆଖ ପାଖରେ ଛୋଟ ବଡ଼ ପର୍ବତ ଓ ଅସଂଖ୍ୟ ଛୋଟ ବଡ଼ ଗାତ ମଧ୍ୟ ଦୃଷ୍ଟିଗୋଚର ହେଉଥିଲା।

ନିସ୍ତବ୍ଧତା ଭାଙ୍ଗି, ପେଚା ମହାଶୟ କହି ଉଠିଲେ ''ବର୍ତ୍ତମାନ, ଆମେ ହେଲୁ ଚନ୍ଦ୍ର ପୃଷ୍ଠର ପ୍ରଥମ ପଶୁପକ୍ଷୀ ଗଣ।''

କୁଆ, ଠେକୁଆ ଓ ମାଛ ମିଳିତକଣ୍ଠରେ କହି ଉଠିଲେ ''ପଶୁପକ୍ଷୀ ସମାଜର ଜୟ ହେଉ।''

''ବର୍ତ୍ତମାନ ଆମେ କାମ ଆରମ୍ଭ କରିବା। ପ୍ରଥମେ ତୁମେ ସମସ୍ତେ ଯାନ ବାହାରକୁ ଯାଇ ଚନ୍ଦ୍ରର ଆଖପାଖ ଅଞ୍ଚଳ ଦେଖି ଆସିବା ପାଇଁ ପ୍ରସ୍ତୁତ ହୋଇଯାଅ।'' ପେଚା ମହାଶୟ କହିଲେ।

ତାଙ୍କ ନିର୍ଦ୍ଦେଶ ଅନୁଯାୟୀ, ପଶୁପକ୍ଷୀ ତିନିଜଣ ନିଜନିଜର ବ୍ୟୋମଚାରୀ ପୋଷାକପତ୍ର ଓ ଜୀବନ ରକ୍ଷକ ବାକ୍ସ (Life support system) ଇତ୍ୟାଦି ସହ ପ୍ରସ୍ତୁତ ହେବାକୁ ଲାଗିଲେ। ପେଚାମହାଶୟ ପୋଷାକ ପିନ୍ଧିବାରେ ବ୍ୟସ୍ତ ଥିବାବେଳେ, କାଉ ନିଜର ପର ଦୁଇଟି ମେଲାଇ

ସର୍ଭିସ୍ ଓ କମାଣ୍ଡ ମଡ୍ୟୁଲ୍‌ରୁ ଅଲଗା କରି ଦେଇଥିଲେ। ମହାକାଶରେ ସର୍ଭିସ୍ ଓ କମାଣ୍ଡର ମିଳିତ ଭାଗଟି ଭାସି ଭାସି ଦୂରେଇ ଗଲା।

ପେଚାମହାଶୟ ଲୁନାର ମଡ୍ୟୁଲ୍ ଚାଳନ କରି ଚନ୍ଦ୍ର ପୃଷ୍ଠକୁ ଅବତରଣ କରି ଚାଲିଲେ। ଲୁନାର ମଡ୍ୟୁଲ୍‌ର ବେଗ ହ୍ରାସ କରିବା ପାଇଁ ରେଟ୍ରୋ ରକେଟ୍ ବା ବିପରୀତ ମୁଖି ଛୋଟ ରକେଟ୍ କେତୋଟି ଫୁଟାଇଥିଲେ। ଟ୍ରେନ୍ ବା କାର୍‌ରେ ବ୍ରେକ୍ ଭଳି ମହାଶୂନ୍ୟରେ ରେଟ୍ରୋରକେଟ୍ (Retro rocket) ଶୂନ୍ୟାକାଶଯାନର ବ୍ରେକ୍ ଭଳି କାମ କରେ। ଫଳରେ ଲୁନାର ମଡ୍ୟୁଲ୍‌ର ବେଗ କମି ଆସି ତାହା ଓଲଟଭାବେ (upside down) ଚନ୍ଦ୍ର ପୃଷ୍ଠକୁ ଓହ୍ଲାଇବାକୁ ଲାଗିଲା। କିଛିକ୍ଷଣ ପରେ ଯନ୍ତ୍ରମସ୍ତିଷ୍କ ବା କମ୍ପ୍ୟୁଟର୍ (Computer) ଉପରେ, ଲୁନାର ମଡ୍ୟୁଲ୍‌ଟିର ପରିଚାଳନାର ସମ୍ପୂର୍ଣ୍ଣ ଭାର ନ୍ୟସ୍ତ କରାଗଲା। କମ୍ପ୍ୟୁଟର୍‌ର, ଦୋଷତ୍ରୁଟିହୀନ ଦକ୍ଷ ପରିଚାଳନା ଦ୍ୱାରା ଲୁନାର୍ ମଡ୍ୟୁଲ୍‌ଟିର ଓଲଟ ଅବସ୍ଥା ପରିବର୍ତ୍ତିତ ହୋଇ, ସିଧା ଭାବେ ଧୀରେ ଧୀରେ ଚନ୍ଦ୍ରପୃଷ୍ଠକୁ ଓହ୍ଲାଇ ଚାଲିଲା। ଲୁନାର୍ ମଡ୍ୟୁଲ୍‌ଟି ଗଛରୁ ଧୀରେ ଧୀରେ ଖସୁଥିବା ଶୁଖିଲା ପତ୍ରଠାରୁ ବି ଆହୁରି କମ୍ ବେଗରେ ନିମ୍ନଗାମୀ ହୋଇ, ଶେଷରେ ଚନ୍ଦ୍ରଭୂମି ଛୁଇଁଲା।

# ଷଷ୍ଠ ପରିଚ୍ଛେଦ

ପଶୁପକ୍ଷୀଙ୍କ କ୍ଷୁଦ୍ରଯାନଟି ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ପରେ ଯାନର ଇଞ୍ଜିନ୍ କିଛି କ୍ଷଣ ପରେ ବନ୍ଦ କରିଦିଆଗଲା। ଯାନ ମଧ୍ୟରେ, ପଶୁପକ୍ଷୀମାନେ ନିସ୍ତବ୍ଧ ରହି ଉତ୍କଣ୍ଠିତଭାବେ ପେଚାମହାଶୟଙ୍କୁ ଚାହିଁରହି ଅପେକ୍ଷା କଲେ। ପେଚାମହାଶୟ ନିଜ କମରପଟି ଖୋଲି ସ୍ୱସ୍ଥାନ ତ୍ୟାଗ କରି ଯାନର ତ୍ରିଭୂଜାକାର ଝରକା ନିକଟକୁ ଯାଇଥିଲେ। କାଉ, ଠେକୁଆ ଓ ମାଛ ମଧ୍ୟ ପେଚାମହାଶୟଙ୍କୁ ଅନୁସରଣ କରିଥିଲେ। ଝରକାର କାଚ ମଧ୍ୟ ଦେଇ ସମସ୍ତ ପଶୁପକ୍ଷୀ ଚନ୍ଦ୍ରପୃଷ୍ଠରେ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ। ସାନ ବଡ଼ ହୋଇ ବହୁତ ପଥର ଖଣ୍ଡ ଚାରିଆଡ଼େ ପଡିଥିଲା। ଭୂମି ଭାଗ, କଳା ଓ ଧଳା ରଙ୍ଗର, ପାଉଡ଼ର ଭଳି ଅତି ସରୁ ସରୁ ଧୂଳିରେ ଭରି ରହିଥିଲା। ଆଖ ପାଖରେ ଛୋଟ ବଡ଼ ପର୍ବତ ଓ ଅସଂଖ୍ୟ ଛୋଟ ବଡ଼ ଗାତ ମଧ୍ୟ ଦୃଷ୍ଟିଗୋଚର ହେଉଥିଲା।

ନିସ୍ତବ୍ଧତା ଭାଙ୍ଗି, ପେଚା ମହାଶୟ କହି ଉଠିଲେ ''ବର୍ତ୍ତମାନ, ଆମେ ହେଲୁ ଚନ୍ଦ୍ର ପୃଷ୍ଠର ପ୍ରଥମ ପଶୁପକ୍ଷୀ ଗଣ।''

କୁଆ, ଠେକୁଆ ଓ ମାଛ ମିଳିତକଣ୍ଠରେ କହି ଉଠିଲେ ''ପଶୁପକ୍ଷୀ ସମାଜର ଜୟ ହେଉ।''

''ବର୍ତ୍ତମାନ ଆମେ କାମ ଆରମ୍ଭ କରିବା। ପ୍ରଥମେ ତୁମେ ସମସ୍ତେ ଯାନ ବାହାରକୁ ଯାଇ ଚନ୍ଦ୍ରର ଆଖପାଖ ଅଞ୍ଚଳ ଦେଖି ଆସିବା ପାଇଁ ପ୍ରସ୍ତୁତ ହୋଇଯାଅ।'' ପେଚା ମହାଶୟ କହିଲେ।

ତାଙ୍କ ନିର୍ଦ୍ଦେଶ ଅନୁଯାୟୀ, ପଶୁପକ୍ଷୀ ତିନିଜଣ ନିଜନିଜର ବ୍ୟୋମଚାରୀ ପୋଷାକପତ୍ର ଓ ଜୀବନ ରକ୍ଷକ ବାକ୍ସ (Life support system) ଇତ୍ୟାଦି ସହ ପ୍ରସ୍ତୁତ ହେବାକୁ ଲାଗିଲେ। ପେଚାମହାଶୟ ପୋଷାକ ପିନ୍ଧିବାରେ ବ୍ୟସ୍ତ ଥିବାବେଳେ, କାଉ ନିଜର ପର ଦୁଇଟି ମେଲାଇ



ବାୟୁହୀନ ଚନ୍ଦ୍ରପୃଷ୍ଠରେ କାଉ ପକ୍ଷରେ ଉଡ଼ିବା ଅସମ୍ଭବ (ପୃଷ୍ଠା ୪୩)



ଜଳହୀନ ଚନ୍ଦ୍ରପୃଷ୍ଠରେ ମାଛ ପକ୍ଷରେ ପହଁରିବା ମଧ୍ୟ ଅସମ୍ଭବ (ପୃଷ୍ଠା ୪୬)

ଅଳସ ଭାଙ୍ଗୁ ଭାଙ୍ଗୁ ଭାବିଲା ''ଏମାନେ ସମସ୍ତେ ପ୍ରସ୍ତୁତ ହେଉଥିବା ସମୟରେ, ମୁଁ ବାହାରକୁ ଯାଇ ଗୋଟେ ମିନିଟ୍ ପାଇଁ ଘେରାଏ ଉଡ଼ି ବୁଲି ଫେରି ଆସିବି। ଯାନର ଛୋଟ କୋଠରୀ ଭିତରେ ବସି ବସି ମୋର ଡେ଼ଣା ଦୁଇଟା ଅଟକ ହୋଇଗଲା ପରି ମନେ ହେଲାଣି। ମୁଁ ଅତି ଶୀଘ୍ର ଫେରି ଆସିବି, ତେଣୁ ମୋର ଅନୁପସ୍ଥିତି କେହି ଲକ୍ଷ୍ୟ କରିବେ ନାହିଁ। ଏତେ ଅଳ୍ପ ସମୟ ପାଇଁ ଏ ଓଜନିଆ ପୋଷାକ ପତ୍ର ଓ ମୁଖା ଇତ୍ୟାଦିର ଆବଶ୍ୟକତା କଣ ?''

କାଉ ଏପରି ଭାବି, ଯାନର ଦ୍ୱାର ଅଳ୍ପ ମେଲା କରି ବାହାରକୁ ଯାଇ ଦୁଇପାଖରେ ଡେ଼ଣା ଦୁଇଟି ମେଲାଇ ଡେ଼ଇଁପଡ଼ିଲା। ସେ ଉଡ଼ିବା ଉଦ୍ଦେଶ୍ୟରେ ଡେ଼ଣାଦୁଇଟିକୁ ବାରମ୍ବାର ତଳ ଉପର କରି ହଲାଇ ଚାଲିଲା। କିନ୍ତୁ ଏ କଣ ? ଉଡ଼ିବା ପରିବର୍ତ୍ତେ ନିଦା ପଥର ଖଣ୍ଡ ପରି ଲଥ୍ କରି ଚନ୍ଦ୍ର ଭୂମିରେ ପଡ଼ିଲା। ତାର ନିଃଶ୍ୱାସ ବନ୍ଦ ହୋଇଗଲା ପରି ମନେ ହେଲା। ପ୍ରଖର ସୂର୍ଯ୍ୟକିରଣ, ତୀକ୍ଷ୍ଣ ଶର ପରି ତାର ଶରୀର ମଧ୍ୟକୁ ଭେଦ କରି ତାର ଦେହ ଓ ପରଗୁଡ଼ିକ ଜାଳି ଭସ୍ମ କରିଦେଲା ଭଳି ଲାଗିଲା। ତାର ଶିରା ପ୍ରଶିରା ଗୁଡ଼ିକ ଫୁଲି ଫାଟି ଯିବା ଭଳି ମନେ ହେଲା।

''ରକ୍ଷାକର !! ବଞ୍ଚାଅ !!.........ଜ୍ଞାନୀମହାଶୟ ! ଶ୍ୱେତାଙ୍ଗ ଭାଇ !!.....ଧୀରଜ ଭାଇ !!'' ଖୁବ୍ ଚିତ୍କାର କରି କାଉ ସମସ୍ତଙ୍କ ନାମ ଧରି ଡ଼ାକ ପକାଇଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ କାଉ ତା ନିଜ ସ୍ୱର ନିଜେ ମଧ୍ୟ ଶୁଣି ପାରିଲା ନାହିଁ। ତଥାପି ସାଥିମାନେ ଶୁଣି ପାରୁଥିବେ ଭାବି ତଣ୍ଟି ଫଟାଇ ଡ଼ାକି ଚାଲିଲା। କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା। ଯାନ ଭିତରେ କେହି ଜଣେ ମଧ୍ୟ କାଉର ଚିତ୍କାର ଶୁଣି ପାରିନଥିଲେ।

ଭାଗ୍ୟକୁ ପେଚାମହାଶୟ, ମାଛ ଓ ଠେକୁଆକୁ ବ୍ୟୋମଚାରୀ ପୋଷାକ ଓ ଟୋପି ଇତ୍ୟାଦି ପିନ୍ଧିବାରେ ସାହାଯ୍ୟ କରିବାକୁ ଯାଇ କାଉକୁ ନ ଦେଖି ବ୍ୟସ୍ତ ହୋଇ ଉଠିଲେ। ଆତଙ୍କିତ ହୋଇ ସମସ୍ତେ ଯାନ ଭିତରେ ଖୋଜି ବୁଲିଲେ। ମାଛର ଦୃଷ୍ଟି ଯାନର ଅଧାମେଲା ଦ୍ୱାର ଉପରେ ପଡ଼ିଲା। ସେ ସନ୍ଦେହୀ ହୋଇ ଯାନ ତଳକୁ ଚାହିଁଲା। ଦେଖିଲା, କାଉ ଭୂମି ଉପରେ ପଡ଼ି ରହି ଥଣ୍ଟ ମେଲାଇ କିଛି କହିବାକୁ ଚେଷ୍ଟା କରୁଛି। ଆଖି ଦୁଇଟି ତାର ଯନ୍ତ୍ରଣାରେ ବୁଜି ଯାଇଥିଲା। ଅତି ଶୀଘ୍ର ମାଛ, ପେଚାମହାଶୟ ଓ ଠେକୁଆଙ୍କୁ କାଉର ଦୁରବସ୍ଥା ଜଣାଇଦେଲା। କାଳ ବିଳମ୍ବ ନ କରି, ପେଚାମହାଶୟ କାଉର ଚନ୍ଦ୍ରପୃଷ୍ଠ ପାଇଁ ଆବଶ୍ୟକୀୟ ପୋଷାକ ଟୋପି ଓ ଜୀବନରକ୍ଷକବାକ୍ସ ଇତ୍ୟାଦି ସହ ଶୀଘ୍ର ଯାନ ତଳକୁ ଶିଡ଼ି ଦ୍ୱାରା ଓହ୍ଲାଇ ଆସିଲେ। ପେଚାମହାଶୟଙ୍କୁ ଅନୁସରଣ କରି ଠେକୁଆ ଓ ମାଛ ମଧ୍ୟ ତଳକୁ ଆସିଲେ। କାଉକୁ ଭୂମିରୁ ଉଠାଇ ଧରି, ଅମ୍ଳଜାନ ପ୍ରବାହିତ ଟୋପିଟି ପିନ୍ଧାଇ ଦେବା ମଧ୍ୟରେ ଠେକୁଆ ଓ ମାଛଙ୍କୁ ଶୀଘ୍ର ପୋଷାକ ଓ ହସ୍ତାଭରଣ ଇତ୍ୟାଦି ପିନ୍ଧାଇ ଦେବାକୁ ନିର୍ଦ୍ଦେଶ ଦେଇଥିଲେ। ଶେଷରେ ଜୀବନରକ୍ଷକ ବାକ୍ସଟି କାଉର ପୋଷାକ ପଛପଟେ ସଂଯୁକ୍ତ କରି ଦେଇଥିଲେ।

ଧୀରେ ଧୀରେ କାଉ ଚେତନା ଲାଭ କରିଥିଲା। ସେ ଆଖିଖୋଲି ଦେଖିଲା। ତାର ସାଥି ଦୁଇଜଣଙ୍କ ସହ ପେଚାମହାଶୟ ଉତ୍ସୁକ ଭାବେ ତାକୁ ଚାହିଁ ରହିଛନ୍ତି। ପେଚାମହାଶୟଙ୍କ ବିନା ଅନୁମତିରେ ଅବାଧ୍ୟ ଛାତ୍ର ଭଳି ଯାନ ବାହାରକୁ ଆସି ସେପରି ଦୁରବସ୍ଥା ହୋଇଥିବାରୁ କାଉ ନିଜକୁ ଦୋଷୀ ମନେ କରି ଚୁପ୍ ରହିଲା। କିନ୍ତୁ ମାଛ ଓ ଠେକୁଆ, କାଉର ଚେ଼ତା ଫେରିଆସିବା

ଅଳସ ଭାଙ୍ଗୁ ଭାଙ୍ଗୁ ଭାବିଲା ''ଏମାନେ ସମସ୍ତେ ପ୍ରସ୍ତୁତ ହେଉଥିବା ସମୟରେ, ମୁଁ ବାହାରକୁ ଯାଇ ଗୋଟେ ମିନିଟ୍ ପାଇଁ ଘେରାଏ ଉଡ଼ି ବୁଲି ଫେରି ଆସିବି। ଯାନର ଛୋଟ କୋଠରୀ ଭିତରେ ବସି ବସି ମୋର ଡ଼େଣା ଦୁଇଟା ଅଚଳ ହୋଇଗଲା ପରି ମନେ ହେଲାଣି। ମୁଁ ଅତି ଶୀଘ୍ର ଫେରି ଆସିବି, ତେଣୁ ମୋର ଅନୁପସ୍ଥିତି କେହି ଲକ୍ଷ୍ୟ କରିବେ ନାହିଁ। ଏତେ ଅଳ୍ପ ସମୟ ପାଇଁ ଏ ଓଜନିଆ ପୋଷାକ ପତ୍ର ଓ ମୁଖା ଇତ୍ୟାଦିର ଆବଶ୍ୟକତା କଣ ?''

କାଉ ଏପରି ଭାବି, ଯାନର ଦ୍ୱାର ଅଳ୍ପ ମେଲା କରି ବାହାରକୁ ଯାଇ ଦୁଇପାଖରେ ଡ଼େଣା ଦୁଇଟି ମେଲାଇ ଡ଼େଇଁପଡ଼ିଲା। ସେ ଉଡ଼ିବା ଉଦ୍ଦେଶ୍ୟରେ ଡ଼େଣାଦୁଇଟିକୁ ବାରମ୍ବାର ତଳ ଉପର କରି ହଲାଇ ଚାଲିଲା। କିନ୍ତୁ ଏ କଣ ? ଉଡ଼ିବା ପରିବର୍ତ୍ତେ ନିଦା ପଥର ଖଣ୍ଡ ପରି ଲଥ୍ କରି ଚନ୍ଦ୍ର ଭୂମିରେ ପଡ଼ିଲା। ତାର ନିଃଶ୍ୱାସ ବନ୍ଦ ହୋଇଗଲା ପରି ମନେ ହେଲା। ପ୍ରଖର ସୂର୍ଯ୍ୟକିରଣ, ତୀକ୍ଷ୍ଣ ଶର ପରି ତାର ଶରୀର ମଧ୍ୟକୁ ଭେଦ କରି ତାର ଦେହ ଓ ପରଗୁଡ଼ିକ ଜାଳି ଭସ୍ମ କରିଦେଲା ଭଳି ଲାଗିଲା। ତାର ଶିରା ପ୍ରଶିରା ଗୁଡ଼ିକ ଫୁଲି ଫାଟି ଯିବା ଭଳି ମନେ ହେଲା।

''ରକ୍ଷାକର !! ବଞ୍ଚାଅ !!.........ଜ୍ଞାନୀମହାଶୟ ! ଶ୍ୱେତାଙ୍ଗ ଭାଇ !!.....ଧୀରଜ ଭାଇ !!'' ଖୁବ୍ ଚିତ୍କାର କରି କାଉ ସମସ୍ତଙ୍କ ନାମ ଧରି ଡ଼ାକ ପକାଇଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ କାଉ ତା ନିଜ ସ୍ୱର ନିଜେ ମଧ୍ୟ ଶୁଣି ପାରିଲା ନାହିଁ। ତଥାପି ସାଥିମାନେ ଶୁଣି ପାରୁଥିବେ ଭାବି ତଣ୍ଟି ଫଟାଇ ଡ଼ାକି ଚାଲିଲା। କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା। ଯାନ ଭିତରେ କେହି ଜଣେ ମଧ୍ୟ କାଉର ଚିତ୍କାର ଶୁଣି ପାରିନଥିଲେ।

ଭାଗ୍ୟକୁ ପେଚାମହାଶୟ, ମାଛ ଓ ଠେକୁଆକୁ ବ୍ୟୋମଚାରୀ ପୋଷାକ ଓ ଟୋପି ଇତ୍ୟାଦି ପିନ୍ଧିବାରେ ସାହାଯ୍ୟ କରିବାକୁ ଯାଇ କାଉକୁ ନ ଦେଖି ବ୍ୟସ୍ତ ହୋଇ ଉଠିଲେ। ଆତଙ୍କିତ ହୋଇ ସମସ୍ତେ ଯାନ ଭିତରେ ଖୋଜି ବୁଲିଲେ। ମାଛର ଦୃଷ୍ଟି ଯାନର ଅଧାମେଲା ଦ୍ୱାର ଉପରେ ପଡ଼ିଲା। ସେ ସନ୍ଦେହୀ ହୋଇ ଯାନ ତଳକୁ ଚାହିଁଲା। ଦେଖିଲା, କାଉ ଭୂମି ଉପରେ ପଡ଼ି ରହି ଥଣ୍ଟ ମେଲାଇ କିଛି କହିବାକୁ ଚେଷ୍ଟା କରୁଛି। ଆଖି ଦୁଇଟି ତାର ଯନ୍ତ୍ରଣାରେ ବୁଜି ଯାଇଥିଲା। ଅତି ଶୀଘ୍ର ମାଛ, ପେଚାମହାଶୟ ଓ ଠେକୁଆଙ୍କୁ କାଉର ଦୁରବସ୍ଥା ଜଣାଇଦେଲା। କାଳ ବିଳମ୍ବ ନ କରି, ପେଚାମହାଶୟ କାଉର ଚନ୍ଦ୍ରପୃଷ୍ଠ ପାଇଁ ଆବଶ୍ୟକୀୟ ପୋଷାକ ଟୋପି ଓ ଜୀବନରକ୍ଷକବାକ୍ସ ଇତ୍ୟାଦି ସହ ଶୀଘ୍ର ଯାନ ତଳକୁ ଶିଡ଼ି ଦ୍ୱାରା ଓହ୍ଲାଇ ଆସିଲେ। ପେଚାମହାଶୟଙ୍କୁ ଅନୁସରଣ କରି ଠେକୁଆ ଓ ମାଛ ମଧ୍ୟ ତଳକୁ ଆସିଲେ। କାଉକୁ ଭୂମିରୁ ଉଠାଇ ଧରି, ଅମ୍ଳଜାନ ପ୍ରବାହିତ ଟୋପିଟି ପିନ୍ଧାଇ ଦେବା ମଧ୍ୟରେ ଠେକୁଆ ଓ ମାଛଙ୍କୁ ଶୀଘ୍ର ପୋଷାକ ଓ ହସ୍ତାଭରଣ ଇତ୍ୟାଦି ପିନ୍ଧାଇ ଦେବାକୁ ନିର୍ଦ୍ଦେଶ ଦେଇଥିଲେ। ଶେଷରେ ଜୀବନରକ୍ଷକ ବାକ୍ସଟି କାଉର ପୋଷାକ ପଛପଟେ ସଂଯୁକ୍ତ କରି ଦେଇଥିଲେ।

ଧୀରେ ଧୀରେ କାଉ ଚେତନା ଲାଭ କରିଥିଲା। ସେ ଆଖିଖୋଲି ଦେଖିଲା। ତାର ସାଥି ଦୁଇଜଣଙ୍କ ସହ ପେଚାମହାଶୟ ଉତ୍ସୁକ ଭାବେ ତାକୁ ଚାହିଁ ରହିଛନ୍ତି। ପେଚାମହାଶୟଙ୍କ ବିନା ଅନୁମତିରେ ଅବାଧ୍ୟ ଛାତ୍ର ଭଳି ଯାନ ବାହାରକୁ ଆସି ସେପରି ଦୁରବସ୍ଥା ହୋଇଥିବାରୁ କାଉ ନିଜକୁ ଦୋଷୀ ମନେ କରି ଚୁପ୍ ରହିଲା। କିନ୍ତୁ ମାଛ ଓ ଠେକୁଆ, କାଉର ଚେତା ଫେରିଆସିବା

ଦେଖି ଖୁସି ହୋଇ ତାକୁ ଆଶ୍ୱାସନା ଦେବାକୁ ଲାଗିଲେ।

ପେଚା ମହାଶୟ କହିଲେ ''ଭାଗ୍ୟ ଭଲ। ତୁମର ବିଶେଷ କିଛି କ୍ଷତି ହୋଇ ନାହିଁ। ସୂର୍ଯ୍ୟଙ୍କର ପ୍ରଖର କିରଣ ଦ୍ୱାରା ତୁମର ପରଗୁଡ଼ିକ ସାମାନ୍ୟ ପୋଡ଼ି ଯାଇଛି। କିନ୍ତୁ ଧୀରଜ ଠିକ୍ ସମୟରେ ଯଦି ତୁମର ସନ୍ଧାନ ପାଇ ନ ଥାଆନ୍ତା, ତେବେ ପରିଣାମ ଅତି ଭୟାବହ ହୋଇଥାଆନ୍ତା। ଜୀବନ୍ତ-ସୁବୋଧ ପରିବର୍ତ୍ତେ ମୃତ-ସୁବୋଧର ଅସ୍ଥି ହୁଏତ ଆମକୁ ମିଳି ଥାଆନ୍ତା। କାରଣ, ଚନ୍ଦ୍ରାକାଶ ବାୟୁମଣ୍ଡଳ ଶୂନ୍ୟ। ବାୟୁମଣ୍ଡଳର ଆଚ୍ଛାଦନ, ଏକ ଛାଙ୍କୁଣୀ ବା ଛାଣିବା ଯନ୍ତ୍ର ଭଳି କାର୍ଯ୍ୟ କରିଥାଏ। ଏହାର ଅନୁପସ୍ଥିତି ଯୋଗୁ ଚନ୍ଦ୍ରର ଆକାଶରେ ସୂର୍ଯ୍ୟ ଦିଗ୍‌ବଳୟ ତଳେ ଉଦୟ ହୋଇ ଅସ୍ତ ହେବାଯାଏ ପ୍ରଚଣ୍ଡ ଲେଲିହାନ ଶିଖା ବିସ୍ତାର କରିଥାଏ। ଏହାର କିରଣର ପ୍ରଖରତା ଧାରୁଆ ଛୁରୀ ଭଳି ଶରୀର ମଧ୍ୟକୁ ଭେଦ କରିଥାଏ। ବାୟୁମଣ୍ଡଳ ବିନା ଏଠି ପ୍ରାତଃ କିମ୍ବା ସଂଧ୍ୟା କାଳ ସମ୍ଭବପର ହୋଇନଥାଏ। ଉପରକୁ ଚାହିଁ ଦେଖ, ବାୟୁମଣ୍ଡଳ ଶୂନ୍ୟ ଚନ୍ଦ୍ରାକାଶର ରଙ୍ଗ କିପରି ଘନ କୃଷ୍ଣବର୍ଣ୍ଣ ଦିଶୁଛି। ପୃଥିବୀର ଆକାଶ ଭଳି ନୀଳ ରଙ୍ଗର ନୁହେଁ।''

ପେଚାମହାଶୟଙ୍କ କଥା ଶୁଣି ସମସ୍ତେ ଚନ୍ଦ୍ରର ଆକାଶ ଆଡ଼କୁ ଦୃଷ୍ଟି ଫେରାଇଲେ। ''ସତେ ତ !!'' ପୃଥିବୀ ଭଳି ନୀଳ ରଙ୍ଗର ଆକାଶ ପରିବର୍ତ୍ତେ ଗାଢ଼ କଳା ରଙ୍ଗର ଆକାଶ ଘେରି ରହିଛି !! ତା ଦେହରେ ପୁଣି ତାରା ଗୁଡ଼ିଏ ମିଞ୍ଜି ମିଞ୍ଜି କରୁଛନ୍ତି। ସୂର୍ଯ୍ୟଙ୍କର ପ୍ରଚଣ୍ଡ ଆଲୋକ ସହ କ୍ଷୁଦ୍ର କ୍ଷୁଦ୍ର ତାରାଗଣଙ୍କ ଉଜ୍ଜ୍ୱଳ ଆଲୋକ ବିନ୍ଦୁର ସମାରୋହ !! କି ଅଦୃଷ୍ଟପୂର୍ବ ଦୃଶ୍ୟ ଏ !!'' ପଶୁପକ୍ଷୀଗଣ ଆତ୍ମବିଭୋର ହୋଇ ପଡ଼ିଲେ। କୃଷ୍ଣବର୍ଣ୍ଣର ଚନ୍ଦ୍ରାକାଶରେ ନୀଳ ଓ ଧବଳ ରଙ୍ଗର ଉଜ୍ଜ୍ୱଳ ଗ୍ରହଟିଏ ଝୁଲି ରହିଥିଲା।

''ଏଁ !! ଚନ୍ଦ୍ରର ମଧ୍ୟ ଧଳା ରଙ୍ଗର ଗୋଟେ ଚନ୍ଦ୍ର ଅଛି !!'' ଚକିତ ହୋଇ ମାଛ ପ୍ରଶ୍ନ କଲା।

ପେଚା ମହାଶୟ ସାମାନ୍ୟ ହସି କହି ଉଠିଲେ। ''ସେହି ଧବଳ ରଙ୍ଗର ଉଜ୍ଜ୍ୱଳ ବଲ୍‌ଟି ଆମ୍ଭମାନଙ୍କର ପ୍ରିୟ ପୃଥିବୀ ଗ୍ରହ। ଆମ ବାସସ୍ଥଳି।''

''ଆମ ପୃଥିବୀ !!....କି ଅପୂର୍ବ ଦୃଶ୍ୟ ଆମେ ଦେଖୁଛେ !! ଚନ୍ଦ୍ରାକାଶରେ ପୃଥିବୀର ଉଦୟ !!'' ମାଛ ଓ ଠେକୁଆ, ଆଶ୍ଚର୍ଯ୍ୟଭରା ସ୍ୱରରେ କହି ଉଠିଲେ। ''ଆଜୀବନ ଏ ଦୃଶ୍ୟ ଆମ ହୃଦୟରେ ସାଇତି ରଖିବୁ''।

''ପୃଥିବୀ ଗ୍ରହ.....ଜିନ୍ଦାବାଦ୍ !!.....ପୃଥିବୀ ଗ୍ରହ.....ଜିନ୍ଦାବାଦ୍ !!'' ଖୁବ୍ ଆନନ୍ଦ ଓ ଉତ୍ସାହରେ ମାଛ ଓ ଠେକୁଆ ଉଚ୍ଚ ସ୍ୱରରେ କହି ଚାଲିଲେ।

ଏଥି ମଧ୍ୟରେ, କାଉ, ପୂରା ସୁସ୍ଥ ହୋଇ ଉଠିଥିଲା। ବିଷର୍ଣ୍ଣ ବଦନ ହୋଇ ଭଙ୍ଗା ଗଳାରେ ସେ ଧୀରେ ଧୀରେ କହିବାକୁ ଆରମ୍ଭ କଲା।

''ଗୋଟିଏ କଥା ମୋ ହୃଦୟକୁ ବଡ଼ ଅସ୍ଥିର କରୁଛି। ଯଦି ତୁମ୍ଭେମାନେ କେହି ମତେ ତାହା ବୁଝାଇ ଦେଇ ପାରିବ ତେବେ ମତେ ଶାନ୍ତି ମିଳିବ। ଏ ଚନ୍ଦ୍ର ଅଭିଯାନରେ ତୁମ୍ଭମାନଙ୍କୁ ମୋର ସହକର୍ମୀ ଓ ବନ୍ଧୁ ବୋଲି ଜାଣିଥିଲି। ତେଣୁ ଭାବିଥିଲି ଯେ ଏ ଅଭିଯାନ ସମୟରେ ଆମେ ସମସ୍ତେ ଏକାଠି ମିଶି କାମ କରିବା ସହ ଭଲମନ୍ଦ, ଆପଦବିପଦ ସମୟରେ ପରସ୍ପରକୁ

ସହାୟତା କରିବୁ। କିନ୍ତୁ ମୋ ବିପଦ ସମୟରେ ତୁମମାନଙ୍କର ସହାୟତା ପାଇଁ ବଡ଼ ପାଟିରେ ଜଣ ଜଣ କରି, ନାମ ଧରି ଡ଼ାକିଥିଲି। କିନ୍ତୁ ତୁମ୍ଭମାନଙ୍କ ମଧ୍ୟରୁ ଜଣେ ବି କେହି ମୋ ଆର୍ତ୍ତ ଚିତ୍କାର ଶୁଣିଲ ନାହିଁ କିମ୍ବା ଆସିଲ ନାହିଁ। ମୁଁ ତୁମ୍ଭମାନଙ୍କର ସହକର୍ମୀ କିମ୍ବା ବନ୍ଧୁ ନ ହେଲେ ମଧ୍ୟ ବିପଦ ସମୟରେ ଜଣେ ଅନ୍ୟ ଜଣକୁ ସାହାଯ୍ୟ କରିବା ପ୍ରାଣୀର ଧର୍ମ ନୁହେଁ କି? ମୋର ଦୁର୍ଦ୍ଦଶା ସମୟରେ ତୁମ୍ଭମାନଙ୍କର ଏପରି ଆଚରଣର କାରଣ କଣ? ମୁଁ ଡ଼ାକିବା ସମୟରେ ତୁମେ ସମସ୍ତେ ବଧୀର ହେବାର ଛଳନା କରିଥିଲ ନା କୌଣସି ଅଜ୍ଞାତ କାରଣରୁ ପ୍ରକୃତରେ ଶୁଣିବା ଶକ୍ତି ହରାଇ ବସିଥିଲ? ମୋ ବିଚାରରେ ତୁମ୍ଭେମାନେ ବଧୀର ହେବାର ଛଳନା କରିଥିଲ। କାରଣ, ବର୍ତ୍ତମାନ ତ ତୁମେ ସମସ୍ତେ ମୋ କଥା ସ୍ପଷ୍ଟ ଭାବେ ଶୁଣି ପାରୁଛ !!''

କାଉର କଥା ଶୁଣି ପେଚା ମହାଶୟ ହସି ଉଠି କହିଲେ ''ତୁମେ ଏଥିପାଇଁ ଦୁଃଖ କରିବା କିମ୍ବା ଆମ୍ଭମାନଙ୍କ ଉପରେ ଅଭିମାନ କରିବା ଉଚିତ ନୁହେଁ। ଆମେ ତୁମର ଶୁଭାକାଂକ୍ଷୀ ଓ ସହାୟକ ବନ୍ଧୁ। ସେ ବିଷୟରେ ତୁମେ ନିଃସଂଦେହ ରୁହ। ବାସ୍ତବରେ କଥା କହିବା ଓ କଥା ଶୁଣିବାର ସ୍ୱତନ୍ତ୍ର ବ୍ୟବସ୍ଥା ବିନା, ଚନ୍ଦ୍ରପୃଷ୍ଠରେ ସମସ୍ତେ କାଲ ଭଳି ବ୍ୟବହାର କରିବେ। ତାହାର କାରଣ ଚନ୍ଦ୍ରପୃଷ୍ଠ ବାୟୁହୀନ। ବାୟୁ କିମ୍ବା ପବନହିଁ, ଶବ୍ଦର ବାହକ। ଏକ ପୋଖରୀର ପାଣି ଭିତରକୁ ପଥର ଖଣ୍ଡେ ପକାଇଲେ ଯେପରି ତରଙ୍ଗ ସୃଷ୍ଟି ହୋଇଥାଏ, ସେହିପରି କଥା କହିଲେ ଶବ୍ଦ, ବାୟୁରେ ତରଙ୍ଗ ସୃଷ୍ଟି କରେ ଓ ଏହି ବାୟୁତରଙ୍ଗ କାନ ଭିତର ଦେଇ ଗତି କରି କାନ ଗିରିରେ ବାଜେ। ଫଳରେ କଥା ଶୁଣାଯାଏ। ପୃଥିବୀର ବୈଜ୍ଞାନିକମାନେ ଗବେଷଣା ଦ୍ୱାରା ଚନ୍ଦ୍ର ବାୟୁହୀନ ଜଗତ ବୋଲି ପୂର୍ବରୁ ଜାଣି, ଶୁନ୍ୟାକାଶଚାରୀଙ୍କ ପୋଷାକ ଓ ଟୋପି ମଧ୍ୟରେ କଥା କହିବା ଓ ଶୁଣିବାର ସ୍ୱତନ୍ତ୍ର ବ୍ୟବସ୍ଥା କରିଛନ୍ତି । ତେଣୁ ସେଗୁଡ଼ିକର ବ୍ୟବହାର ଦ୍ୱାରା ଆମେ ପରସ୍ପର ମଧ୍ୟରେ କଥାବାର୍ତ୍ତା କରିପାରୁଛୁ ଓ ଶୁଣି ପାରୁଛୁ । କିନ୍ତୁ ତୁମେ, ପୋଷାକ ଓ ଟୋପି ବ୍ୟବହାର ବିନା, ସହାୟତା ପାଇଁ ଚିତ୍କାର କରିଥିଲେ ମଧ୍ୟ ଆମେ କେହି ତାହା ଶୁଣିବାକୁ ସକ୍ଷମ ହୋଇ ନଥିଲୁ। ଭୁଲ୍ ତୁମର। ଚନ୍ଦ୍ର-ପୋଷାକ ବ୍ୟବହାର ବିନା ତୁମର ଏ ଶାରିରୀକ ଆଘାତ ମଧ୍ୟ ହେଲା। ଚନ୍ଦ୍ରପୃଷ୍ଠରେ ଦିବସର ପ୍ରଚଣ୍ଡ ସୂର୍ଯତାପ ଓ ରାତ୍ରିର ତୀବ୍ର ଶୀତର ପ୍ରକୋପରୁ ବ୍ୟୋମଚାରୀମାନଙ୍କୁ ରକ୍ଷା କରି ସେମାନଙ୍କୁ ଶାରିରୀକ ସ୍ୱାଚ୍ଛନ୍ଦ୍ୟ ଓ ଚଳପ୍ରଚଳର ସୁବିଧା ଦୃଷ୍ଟିରୁ ଏ ବ୍ୟୋମଚାରୀ ପୋଷାକପତ୍ର ଗୁଡ଼ିକ ପ୍ରସ୍ତୁତ କରାଯାଇଛି।

''ତୁମ୍ଭମାନଙ୍କ ପୋଷାକ ପଛପଟେ ଝୁଲି ରହିଥିବା ଜୀବନରକ୍ଷକବାକ୍ସ (Life support system) ବିନା ତୁମ୍ଭେମାନେ କ୍ଷଣକ ପାଇଁ ମଧ୍ୟ ଚନ୍ଦ୍ରପୃଷ୍ଠରେ ବଞ୍ଚି ରହି ପାରିବ ନାହିଁ। ସେହି ବାକ୍ସ ଗୁଡ଼ିକ ଭିତରେ ତୁମର ଜୀବନ ରକ୍ଷା ପାଇଁ ସମସ୍ତ ଆବଶ୍ୟକୀୟ ସରଞ୍ଜାମ ଖଞ୍ଜା ହୋଇ ରହିଛି। ନିଃଶ୍ୱାସ ନେବା ପାଇଁ ଅମ୍ଳଜାନ, ଶୂନ୍ୟାକାଶଚାରୀଙ୍କ ଶରୀରର ଉତ୍ତାପ ଓ ଚାପ ସ୍ୱାଭାବିକ ଅବସ୍ଥାରେ ରଖିବାକୁ ତାପ ଓ ଚାପ ନିୟନ୍ତ୍ରଣ ଯନ୍ତ୍ର, ତୃଷା ମେଣ୍ଟାଇବା ପାଇଁ ପାନୀୟ ଜଳ ଇତ୍ୟାଦି ଗଚ୍ଛିତ ଅଛି। ଏହି ଜଳ ସେମାନଙ୍କ ପୋଷାକ ମଧ୍ୟରେ ଜଳବାହକ ନଳୀ ଗୁଡ଼ିକ ମଧ୍ୟରେ ସଂଚାଳିତ ହେଉଛି। ତାହା ସେମାନଙ୍କ ଶରୀରକୁ ଥଣ୍ଡା ରଖିବା ସହ, ସେମାନେ ଇଚ୍ଛାନୁଯାୟୀ ସେଥିରୁ ଶୋଷି ପାଣି ପିଇ ପାରିବେ। ବ୍ୟୋମଚାରୀ ବ୍ୟବହାର ପାଇଁ ପ୍ରସ୍ତୁତ ତିନୋଟି ବସ୍ତୁ ଯଥା ପୋଷାକ, ଶିରାଭରଣ ଓ ଜୀବନରକ୍ଷକବାକ୍ସ ସାହାଯ୍ୟରେ ସେମାନେ ଯେ କୌଣସି ବାୟୁହୀନ

ଓ ପ୍ରତିକୂଳ ପରିବେଶ ମଧ୍ୟରେ ଅକ୍ଲେଶରେ ଚଳପ୍ରଚଳ ହୋଇ ବଞ୍ଚି ରହିବାକୁ ସକ୍ଷମ ହୋଇପାରିବେ।''

ପେଚା ମହାଶୟ କହିବା ଶେଷ କରିବା ମାତ୍ରେ ମାଛ କହି ଉଠିଲା --''ଗତ ଦୁଇ ଚାରିଦିନ ହେଲା ପାଣି ବିନା ଗରମରେ ମୋ ଦେହ ଭୀଷଣ ପୋଡ଼ାଜଳା କରି ଅସ୍ୱସ୍ତି ବୋଧ ହେଉଛି। ତୁମ୍ଭେମାନେ ଏଠି କଥାବାର୍ତ୍ତା କରୁଥାଅ। ମୁଁ ଯାଉଛି ଏଇ ପାଖ ଛୋଟ ପୋଖରୀଟିରେ ଟିକେ ବୁଡ଼ିପଡ଼ି ଦେହ ଥଣ୍ଡା କରି ଆସେ। ପରେ ଦେଖା ହେବ।'' କଥାଗୁଡ଼ିକ ଏକ ନିଃଶ୍ୱାସରେ କହି ପକାଇ ମାଛ ଖୁବ୍ ଶୀଘ୍ର ଦୂରକୁ ଚାଲିଯାଇଥିଲା। ପେଚାମହାଶୟ ତାକୁ ''ନାହିଁ'', ''ନାହିଁ'' କହୁଥିବା ସତ୍ତ୍ୱେ ସେ ଆଖି ନାକ ବୁଜି ଗୋଟିଏ ଛୋଟ ଗାତ ଭିତରକୁ ପହଁରିବା ଉଦ୍ଦେଶ୍ୟରେ ଡ଼େଇଁ ପଡ଼ିଲା। କିନ୍ତୁ ସେଠି ପାଣିନଥିବା ଦେଖି ଭାବିଲା, ସୂର୍ଯ୍ୟଙ୍କର ପ୍ରଖର କିରଣ ଯୋଗୁ ବୋଧହୁଏ ସେ ପୋଖରୀର ପାଣି ସବୁ ଶୁଖିଯାଇଛି। ''କିଛି ଅସୁବିଧା ନାହିଁ। ଯାଉଛି ପାଖରେ ଥିବା ଅନ୍ୟ ଏକ ପୋଖରୀରେ ପହଁରିବି। ଏଠି ପୋଖରୀର ଅଭାବ ନାହିଁ।''- ଏପରି ଭାବି ମାଛ ଶୀଘ୍ର ସେଠୁ ବାହାରି ଆସି, ନିକଟରେ ଥିବା ଅନ୍ୟ ଏକ ବଡ଼ ଗାତ ପାଖକୁ ଧାଇଁ ଚାଲିଗଲା। ଭିତରକୁ ଚାହିଁଲା। ଘନ ଅନ୍ଧାର। କିଛି ଦେଖାଗଲା ନାହିଁ। ''ପାଣି ନିଶ୍ଚୟ ଭିତରେ ଅଛି''--ମାଛ ଭାବି ନେଲା। ଖୁବ୍ ଜୋରରେ ଗୋଟେ ଦୀର୍ଘ ନିଃଶ୍ୱାସ ପେଟ ଭିତରକୁ ଟାଣି ନେଇ ସେ ଗାତ ଭିତରକୁ ଡ଼େଇଁ ପଡ଼ିଲା।

''ଓଃ....ଓଃ....ଓଃ....'' ମାଛ ଯନ୍ତ୍ରଣାରେ ଚିତ୍କାର କରି ଉଠିଲା। ''ବାପାଲୋ.....ମାଲୋ........ମରିଗଲିଲୋ.....ଏ କି ପୋଖରୀ ଲୋ ମା....ପାଣି ବୁନ୍ଦାଏ ବି ନାହିଁ!! ମୋର ହାଡ଼ ସବୁ ଭାଙ୍ଗି ଗଲାରେ......'' ମାଛ ଯନ୍ତ୍ରଣାମିଶା ସ୍ୱରରେ ବାହୁନି ଚାଲିଲା।

ଏଥି ମଧ୍ୟରେ ପେଚାମହାଶୟ ଓ ଅନ୍ୟ ଦୁଇଜଣ ସାଥି ମାଛ ପଡ଼ିଥିବା ଗାତ ନିକଟରେ ପହଞ୍ଚି ଯାଇଥିଲେ। ପେଚା ମହାଶୟ ଅନ୍ଧାରିଆ ଗାତଟି ଭିତରକୁ ଝୁଙ୍କିପଡ଼ି ମାଛ ଉଦ୍ଦେଶ୍ୟରେ କହିଲେ।

''ଧୀରଜ!! ତଳେ ତମେ ସେଠି ଠିକ୍ ଅଛତ?''

''ଠିକ୍ ଅଛି? ଓଃ....ଓଃ....ଓଃ.. ମୋର ଏପରି ଅବସ୍ଥାରେ ଆପଣ ଥଟ୍ଟା କଲାଭଳି ପ୍ରଶ୍ନ କିପରି ପଚାରୁଛନ୍ତି ଜ୍ଞାନୀ ମହାଶୟ?'' ଯନ୍ତ୍ରଣାଭରା ସ୍ୱରରେ ଚିତ୍କାର କରୁ କରୁ ମାଛ କହିଲା....''ମୋ ଦେହରୁ ସବୁ ହାଡ଼ ଚୂନା ହୋଇ ଗଲାରେ....ତଥାପି ମୁଁ ଯେ ଜୀବିତ ରହିଛି, ଏହା ଆଶ୍ଚର୍ଯ୍ୟର ବିଷୟ!! ପ୍ରଭୁ ହେ.....ଏମିତି ଶୁଖିଲା ଗହୀର ପୋଖରୀ ମୋ ଜୀବନରେ କେବେ ଦେଖିନଥିଲି। ଏଠୁ ପାଣି ସବୁ ଗଲା କୁଆଡ଼େ? ମୁଁ କିଛି ବୁଝିପାରୁନାହିଁ ରେ'' ଭଙ୍ଗା କଣ୍ଠରେ ବାତୁଳଙ୍କ ଭଳି ମାଛ କହିଚାଲିଲା।

ମାଛର କଥା ଶୁଣି ପେଚା ମହାଶୟ କହିଲେ।

''ଥଟ୍ଟା କରିବାର ଏ ବେଳ ନୁହେଁ କି ସ୍ଥାନ ମଧ୍ୟ ନୁହେଁ। ତେବେ, ମୁଁ ପୂର୍ବରୁ ତୁମ ସମସ୍ତଙ୍କୁ ବୁଝାଇ କହିଥିଲି ଯେ ତୁମ୍ଭମାନଙ୍କର ଚନ୍ଦ୍ର ସମ୍ବନ୍ଧୀୟ ଜ୍ଞାନ କିମ୍ବା ଅଭିଜ୍ଞତା ନାହିଁ। ତେଣୁ ଯେ କୌଣସି କାର୍ଯ୍ୟ କରିବା ପୂର୍ବରୁ ମୋ ସହିତ ପରାମର୍ଶ କରିବ। ମୁଁ ତୁମ୍ଭମାନଙ୍କର ଉପଦେଷ୍ଟା ରୂପେ ଚନ୍ଦ୍ରକୁ ଆସିଛି ଓ ଯତ୍‌କିଞ୍ଚିତ ଜ୍ଞାନ ମୋର ଅଛି। ତଦ୍ୱାରା ତୁମ୍ଭମାନଙ୍କ ସହ ଚନ୍ଦ୍ର ଅଭିଯାନ ସଫଳ ଭାବେ ଶେଷ କରି, ପୃଥିବୀକୁ ପ୍ରତ୍ୟାବର୍ତ୍ତନ କରିବାକୁ ସାହାଯ୍ୟ କରିବି। କିନ୍ତୁ, ତୁମେ

ସମସ୍ତେ ମୋତେ ଅବଜ୍ଞା କରି, ନିଜ ନିଜର ଇଚ୍ଛାନୁସାରେ କାର୍ଯ୍ୟ କରି ଜଣକ ପରେ ଜଣେ ବିପଦ ବରଣ କରି ବାଧାବିଘ୍ନ ସୃଷ୍ଟି କରୁଛ।'' ପେଚାମହାଶୟଙ୍କ ସ୍ୱର ଗମ୍ଭୀର ହୋଇ ଆସିଲା। ''ଚନ୍ଦ୍ରପୃଷ୍ଠ ଜଳହୀନ, ଏହା ତୁମ୍ଭମାନଙ୍କୁ ଜଣା ନାହିଁ। ଚନ୍ଦ୍ରର ଏ ଛୋଟ ବଡ଼ ଗାତ ଗୁଡ଼ିକ ପୋଖରୀ କିମ୍ବା ଗଡ଼ିଆ ନୁହେଁ। ଚନ୍ଦ୍ର ସୃଷ୍ଟି ହେବା ପରେ, ଏହାର ଉତପ୍ତ ତରଳ ବାଷ୍ପୀୟ ଅବସ୍ଥା, କ୍ରମେ ଶୀତଳ ହୋଇ ଏକ ପତଳା କଠିଣ ସ୍ତରର ସୃଷ୍ଟି ହୋଇଥିଲା। ଏହି ସମୟରେ ମହାଶୂନ୍ୟରୁ ବିରାଟ ବିରାଟ ଉଲ୍କା ଖଣ୍ଡସବୁ ଚନ୍ଦ୍ରପୃଷ୍ଠରେ ପଡିବା ଫଳରେ ଏ ସବୁ ଗାତ ସୃଷ୍ଟି କରିଥିଲା। ଅନ୍ୟ କେତେକ ଗାତ ଚନ୍ଦ୍ରର ଅଗ୍ନ୍ୟୁତ୍ପାତ କ୍ରିୟା ଦ୍ୱାରା ମଧ୍ୟ ସୃଷ୍ଟି ହୋଇଛି। ସମ୍ମୁଖସ୍ଥ ବିସ୍ତୃତ ସମତଳ ଅଞ୍ଚଳ ବା ମେରିଆ (Maria) ଗୁଡ଼ିକୁ ଚାହିଁ ଦେଖ। ଅଗ୍ନ୍ୟୁତ୍ପାତ କ୍ରିୟା ଦ୍ୱାରା ଚନ୍ଦ୍ରର ଆଭ୍ୟନ୍ତରୀଣ ଉତପ୍ତ ତରଳ ଲାଭା ବହିର୍ଭାଗରେ ପ୍ରବାହିତ ହୋଇ କ୍ରମେ ଶୀତଳ ହୋଇଯିବା ଫଳରେ ଏପରି ସମତଳ କୃଷ୍ଣବର୍ଣ୍ଣ ଅଞ୍ଚଳର ସୃଷ୍ଟି ହୋଇଛି। ବାୟୁମଣ୍ଡଳର ଅନୁପସ୍ଥିତି ଯୋଗୁ ବର୍ଷା ନାହିଁ ଓ ବର୍ଷା ବିନା ପାଣି ନାହିଁ। ତେଣୁ ଚନ୍ଦ୍ରର କୌଣସି ଗାତରେ ପାଣି ନାହିଁ।''

ପେଚା ମହାଶୟଙ୍କ କଥା ଶୁଣି ମାଛ ଗାତ ଭିତରୁ ଅଧୀର ହୋଇ କହି ଉଠିଲା।

''ଜ୍ଞାନୀ ମହାଶୟ !! ମତେ ଶୀଘ୍ର ଏ ଗାତ ଉପରକୁ ଉଠାଇବାର ବନ୍ଦୋବସ୍ତ କରନ୍ତୁ, ନଚେତ୍ ଆପଣ କହିବା ଅନୁଯାୟୀ ଦୁର୍ଭାଗ୍ୟବଶତଃ ଯଦି ଆକାଶରୁ ବଡ଼ ଉଲ୍କା ଖଣ୍ଡେ ମୁଁ ଥିବା ଗାତ ଉପରେ ପଡ଼ିଯାଏ ତେବେ ଏ ଗାତର ମୁହଁ ବନ୍ଦ ହୋଇଯାଇ ମତେ ଜୀବନ୍ତ ସମାଧି ମିଳିବ କିମ୍ବା ଯଦି ଛୋଟ ଛୋଟ ପଥର ଖଣ୍ଡମାନ ମୋ ଗାତ ଭିତରେ ପଡ଼ିବ ତେବେ ମୋ ଦେହର ଅବଶିଷ୍ଟାଂଶ ଚୂନା ହୋଇ ଚନ୍ଦ୍ରର ଧୂଳିରେ ମିଶିଯିବ। ଏ ସବୁ କିଛି ନ ହୋଇ ଯଦି ଆପଣ କହିବା ଭଳି ଅଗ୍ନ୍ୟୁତ୍ପାତ କ୍ରିୟା ଆରମ୍ଭ ହୁଏ... ମୁଁ....ମୁଁ....ପୋଡ଼ାମାଛ....ଓଃ ପ୍ରଭୁ ହେ !! କି ଦୁର୍ଯୋଗରେ ଚନ୍ଦ୍ରକୁ ଆସିଲି ! ଚନ୍ଦ୍ରରେ ମୁଁ ପ୍ରଥମ ଜୀବନ୍ତମାଛ ତ ନୁହେଁ, ସର୍ବପ୍ରଥମ ମଲାମାଛ ରୂପେ ସ୍ମରଣୀୟ ହୋଇ ରହିବି। ଆଉ ମୋ ବାପା, ମା କି ଜାତି ଭାଇଙ୍କ ମୁହଁ ଦେଖି ପାରିବି ନାହିଁ କିମ୍ବା କେହି ମୋର ମୃତ ଶରୀରର ଏ ଗାତ-ସମାଧି ପାଖରେ ତାଜା ଫୁଲ ଚଢ଼ାଇବାକୁ ଆସିବେ ନାହିଁ। ମୋର ଆତ୍ମା ଏ ପ୍ରଶସ୍ତ ଚନ୍ଦ୍ରଭୂମିରେ ଭୂତ ରୂପେ ଘୂରି ବୁଲିବ। ମୋ ମା, ମତେ କେତେ ଗେହ୍ଲା କରି ପାଳିଥିଲା କଣ ମୋର ଏଇ ଶେଷ ଗତି ପାଇଁ ?'' ମାଛ ଶୋକାକୁଳ ହୋଇ ଉଠିଲା।

ମାଛର ଅଧୀରତା ଦେଖି ପେଚା ମହାଶୟ ସାନ୍ତ୍ୱନା ଦେଇ କହିଲେ, ''ତୁମେ ଏପରି ଅନର୍ଥ ଚିନ୍ତା କରି, ଅଧୀର ହେବାର କାରଣ କିଛି ନାହିଁ। ମୁଁ ତୁମକୁ ଚନ୍ଦ୍ର ବିଷୟରେ ଯାହା କହିଲି, ତାହା ଚନ୍ଦ୍ରର ବିଗତ ଘଟଣା। ଧୈର୍ଯ୍ୟ ରଖ। ଆମେ ତୁମକୁ ଅତି ଶୀଘ୍ର ଗାତ ମଧ୍ୟରୁ ବାହାରକୁ କାଢ଼ି ଆଣିବୁ।''

''ହଁ....ହଁ, ଧୀରଜ ଭାଇ, ଅତି ଶୀଘ୍ର ତୁମକୁ ଏ ଗାତରୁ ଉଦ୍ଧାର କରିବୁ'' ଠେକୁଆ ଓ କାଉ ଦୁହେଁ ଏପରି କହି, ବିଭିନ୍ନ କୌତୁକିଆ କଥା ଗୁଡିଏ କହି ମାଛର ମନ ବଦଳାଇବାକୁ ଚେଷ୍ଟା କଲେ। ପେଚାମହାଶୟ, ଠେକୁଆକୁ ଯାନ ମଧ୍ୟକୁ ଯାଇ, ସେଠି ରଖା ହୋଇଥିବା ଏକ ଲମ୍ବା ଦଉଡି ଆଣିବାକୁ ନିର୍ଦ୍ଦେଶ ଦେଇଥିଲେ। ଠେକୁଆ ଡେଇଁ ଡେଇଁ ଯାଇ ଯାନ ମଧ୍ୟକୁ ପ୍ରବେଶ

କଲା। କିଛି ସମୟ ପରେ ସେ ଦଉଡିଟିକୁ ହାତରେ ଧରି ଆସି ପେଚାମହାଶୟଙ୍କ ନିକଟରେ ପହଞ୍ଚିଲା। ପେଚାମହାଶୟ ଦଉଡିଟିର ଏକ ପାଖରେ, ଏକ ଫାଶ ତିଆରି କରି, ସେହି ଭାଗଟି ମାଛ ଥିବା ଗାତ ଭିତରକୁ ଖସାଇ ଦେଲେ ଓ ମାଛକୁ ସେ ଫାଶଟିକୁ ତାର କଟି ଚାରିପାଖେ ଗଳାଇ ବାନ୍ଧି ଦେବାକୁ ନିର୍ଦ୍ଦେଶ ଦେଲେ। ମାଛ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ସେହିପରି କଲା। ଦଉଡିଟିର ଆରପାଖକୁ ପେଚାମହାଶୟ, କାଉ ଓ ଠେକୁଆ, ହାତରେ ଧରି ମାଛକୁ ଧୀରେ ଧୀରେ ଉପରକୁ ଟାଣି ବାହାରକୁ ନେଇଆସିଲେ।

''ଭାଗ୍ୟ ଭଲ, ଗାତର ଗଭୀରତା କମ୍ ଥିଲା। ନଚେତ୍ ଦଉଡ଼ି ଦ୍ୱାରା ତମକୁ ଗାତରୁ ଉଦ୍ଧାର କରିବା ଅସମ୍ଭବ ହୋଇଥାଆନ୍ତା।'' ପେଚାମହାଶୟ ଆଶ୍ୱସ୍ତ ହୋଇ ମାଛ ଉଦ୍ଦେଶ୍ୟରେ କହିଲେ। ସେ ମାଛର ଶରୀରର ବିଭିନ୍ନ ଅଂଶ ଭଲକରି ପରୀକ୍ଷା କରି କୌଣସି ଗୁରୁ ଆଘାତର ସୂଚନା ପାଇନଥିଲେ। ସମସ୍ତେ ଆସ୍ୱସ୍ତ ହେଲେ।

''ତୁମର ବ୍ୟୋମଚାରୀ ପୋଷାକ ଓ ଟୋପି ଇତ୍ୟାଦି ତୁମକୁ ଗୁରୁ ଆଘାତରୁ ବଞ୍ଚାଇ ଦେଲା। ଦ୍ୱିତୀୟତଃ ଏ ଦୁର୍ଘଟଣା ଚନ୍ଦ୍ରପୃଷ୍ଠରେ ଘଟିଲା ବୋଲି ମଧ ତୁମର ପ୍ରାଣରକ୍ଷା ହେଲା। ପୃଥିବୀ ପୃଷ୍ଠରେ ଏପରି ଏକ ଗଭୀର ଗାତରେ ପଡ଼ିଥିଲେ, ବ୍ୟୋମଚାରୀ ପୋଷାକ ସହ ତୁମର ସମସ୍ତ ହାଡ଼, ପିଞ୍ଜରା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଇଥାଆନ୍ତା'' ପେଚା ମହାଶୟ ମାଛ ଉଦ୍ଦେଶ୍ୟରେ କହିଲେ।

''କାହିଁକି ?'' ଠେକୁଆ ଓ କାଉ ସମସ୍ୱରରେ ପ୍ରଶ୍ନ କଲେ।

''କାରଣ ଚନ୍ଦ୍ରର ମାଧ୍ୟାକର୍ଷଣ ପୃଥିବୀଠାରୁ ୬ ଗୁଣ କମ୍। ତେଣୁ ଏଠି ପୃଥିବୀପୃଷ୍ଠଠାରୁ ୬ ଗୁଣ କମ୍ ଜୋରରେ ଆକର୍ଷିତ ହୋଇ ପଡ଼ିବ। ଫଳରେ ଶରୀରର ଆଘାତ ମଧ ଲଘୁ ହେବ। ମହାଶୂନ୍ୟରୁ ଚନ୍ଦ୍ର ପୃଷ୍ଠରେ ପଡୁଥିବା ଉଲ୍‌କା ବା ପଥର ଖଣ୍ଡ କିନ୍ତୁ ପୃଥିବୀ ପୃଷ୍ଠ ଅପେକ୍ଷା ଅଧିକା ପ୍ରତିଘାତ (Impact) ସୃଷ୍ଟି କରେ। କାରଣ ଏଠି ବାୟୁମଣ୍ଡଳର ଅନୁପସ୍ଥିତି ହେତୁ ପଥର ବା ଉଲ୍‌କା ବାଧାହୀନ ହୋଇ ଅକ୍ଷୁର୍ଣ୍ଣ ଓ ଶବ୍ଦହୀନ ଭାବେ ପଡ଼େ।''

ପେଚାମହାଶୟଙ୍କ କଥା ଶୁଣି ମାଛ ଭୟଭୀତ ସ୍ୱରରେ କହି ଉଠିଲା--

''ଏଠୁ ଶୀଘ୍ର ପଳାଇ ଯିବା ଚାଲ। ନ ହେଲେ, ଦୈବାତ ବିରାଟ ବିରାଟ ପଥରଖଣ୍ଡମାନ ନିଃଶବ୍ଦ ଭାବେ ଖସି ଆମ ମୁଣ୍ଡ ଉପରେ ଯଦି ପଡ଼ିଯିବ ଅବସ୍ଥା ସାଂଘାତିକ ହେବ। ପ୍ରାଣ ଯିବା ପୂର୍ବରୁ ନିଜର ଇଷ୍ଟଦେବଙ୍କୁ ମଧ ସ୍ମରଣ କରିବାକୁ ସମୟ ମିଳିବ ନାହିଁ। ଚନ୍ଦ୍ରରେ ଥିବା ଯାଏ ମୁଁ ଏଇ ମୁହୂର୍ତ୍ତରୁ ଉପରମୁହାଁ ହୋଇ ଚଳପ୍ରଚଳ ହେବି। ତାହେଲେ ଶୂନ୍ୟମଣ୍ଡଳରୁ ନିଃଶବ୍ଦ ଭାବେ ଖସୁଥିବା ପଥର ଖଣ୍ଡମାନ ଆଖିରେ ଦେଖି ସାବଧାନ ହୋଇଯିବି।''

''କିନ୍ତୁ ଧୀରଜ ଭାଇ।''.....ଠେକୁଆ ହସି ଉଠି କହିଲା ''ଉପରକୁ ଚାହିଁ ଚାଲୁ ଚାଲୁ ଯଦି ଭୁଲରେ ଗୋଟେ ବଡ଼ ଗାତରେ ପଡ଼ିଯାଅ ତେବେ ତମର ଅବସ୍ଥା କିଛି କମ୍ ସାଂଘାତିକ ହେବ ନାହିଁ!! ଭାବି ଦେଖ।''

ଠେକୁଆ କଥା ଶୁଣି ପେଚା ମହାଶୟ ଓ କାଉ ହସି ଉଠିଲେ।

''ବର୍ତ୍ତମାନ ତୁମ୍ଭମାନଙ୍କୁ ମୁଁ ଏକ ନୂତନ ଆବିଷ୍କାର ବିଷୟରେ କହିବି।'' ଠେକୁଆ ଉତ୍ସୁକ ଭାବେ କହିଉଠିଲା।

''ନା....ନା....ଶ୍ୱେତାଙ୍ଗ ଭାଇ। ପୁଣି ତୁମେ ଆମକୁ ତୁମ ଅଜାଙ୍କର ଆଉ ଏକ ଆବିଷ୍କାରର କାହାଣୀ ଶୁଣାଇବ ନାଁ କଣ ?'' ମାଛ ଓ କୁଆ କହି ପକାଇଲେ।

''ନା ନା....ଏ ମୋର ନିଜ ଆବିଷ୍କାରର କଥା।'' ହସ ହସ ବଦନରେ ଠେକୁଆ କହିଲା, ''ପେଚା ମହାଶୟଙ୍କ କହିବା ଅନୁଯାୟୀ ମୁଁ ଦଉଡ଼ି ଆଣିବାକୁ ଯାନ ନିକଟକୁ ଯାଇ ଫେରିବା ସମୟରେ ଏକ ନୂଆ କଥା ଆବିଷ୍କାର କଲି। ଖୁବ୍ ମଜାଦାର ଆବିଷ୍କାର ମଧ୍ୟ। ହାତରେ ଦଉଡ଼ିଟି ଧରି ଶୀଘ୍ର ଫେରି ଆସିବା ଉଦ୍ଦେଶ୍ୟରେ ମୁଁ ଖୁବ୍ ଶୀଘ୍ର ଶୀଘ୍ର ଡେଇଁ ଚାଲିବାକୁ ଆରମ୍ଭ କଲି। କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ପୃଥିବୀ ତୁଳନାରେ ମୁଁ ଏଠି ବହୁ ଉଚ୍ଚକୁ ବିନା ପ୍ରୟାସରେ ଡେଇଁବାକୁ ସମର୍ଥ ହୋଇ ପାରୁଛି। ମୁଁ ତୁମ୍ଭମାନଙ୍କ ଆଗରେ ତାହା ପ୍ରମାଣ କରି ଦେଖାଉଛି ଦେଖ।'' ଏହା କହିବା ସହ ଠେକୁଆ ଖପ୍ ଖପ୍ କରି ଡେଇଁବା ଆରମ୍ଭ କରିଦେଲା।

''ବାଃ....ବାଃ.... ଶ୍ୱେତାଙ୍ଗ ଭାଇ'', ମାଛ ଓ କାଉ ପ୍ରଶଂସା କରି କହି ଉଠିଲେ ''ତୁମେ ତୁମର ଏ ଆବିଷ୍କୃତ ନୂତନ ଦକ୍ଷତାକୁ ବଜାୟ ରଖ। ପୃଥିବୀପୃଷ୍ଠରେ ଏହା ପ୍ରଦର୍ଶନ କଲେ ଜଣେ ଅସାଧାରଣ ଠେକୁଆ (Super Rabbit) ରୂପେ ପ୍ରସିଦ୍ଧ ହୋଇଯିବ ଓ ଠେକୁଆ ସମାଜର ମୁକୁଟମଣି ପଦବୀ ପାଇବ।''

ପେଚାମହାଶୟ ପଶୁପକ୍ଷୀଙ୍କ କଥା ଶୁଣି ହାସ୍ୟ ମୁଖରେ କହିଲେ ''ଏପରି ଅସାଧାରଣ ଦକ୍ଷତା, ପୃଥିବୀକୁ ପ୍ରତ୍ୟାବର୍ତ୍ତନ କଲେ ଆପେ ଆପେ ସାଧାରଣରେ ପରିବର୍ତ୍ତିତ ହୋଇଯିବ। ଚନ୍ଦ୍ରର ଗଠଣ ପୃଥିବୀଠାରୁ ଭିନ୍ନ। ଏହାର ଆକାର ପୃଥିବୀଠାରୁ କ୍ଷୁଦ୍ର ଓ ଏହାର ବସ୍ତୁଘନତା ମଧ୍ୟ କମ୍। ପୃଥିବୀ ଭଳି ଚନ୍ଦ୍ରର କେନ୍ଦ୍ରସ୍ଥଳି, ଲୌହଗଠିତ ନୁହେଁ। ତେଣୁ, ଏହାର ବିଦ୍ୟୁତ୍ ପ୍ରବାହିତ ଚୁମ୍ବକୀୟକ୍ଷେତ୍ର (Electromagnetic field) ମଧ୍ୟ ନାହିଁ। ଚନ୍ଦ୍ରର ମାଧ୍ୟାକର୍ଷଣଶକ୍ତି ପୃଥିବୀପୃଷ୍ଠ ଅପେକ୍ଷା ଛ ଗୁଣ କମ୍। ପୃଥିବୀପୃଷ୍ଠରେ ଶ୍ୱେତାଙ୍ଗ ଏକ ଫୁଟ ଉଚ୍ଚ ଡେଇଁ ପାରୁଥିଲେ ଚନ୍ଦ୍ରରେ ୬ଫୁଟ ଉଚ୍ଚକୁ ଡେଇଁବାକୁ ସକ୍ଷମ ହେବ। ଆଉ ମଧ୍ୟ ଚନ୍ଦ୍ରରେ ଯେକୌଣସି ବସ୍ତୁର ଓଜନ ପୃଥିବୀ ପୃଷ୍ଠ ଅପେକ୍ଷା ଛ ଗୁଣ କମ୍ ହେବ। କାରଣ, ମାଧ୍ୟାକର୍ଷଣ ଶକ୍ତିର ପରିମାଣ ଅନୁଯାୟୀ, ଜୀବନ୍ତ ଓ ଜଡ଼ ବସ୍ତୁର ଓଜନ କମ୍‌ବେଶୀ ହୋଇଥାଏ। ପୃଥିବୀରେ ଶ୍ୱେତାଙ୍ଗର ଓଜନ ୧୪ କିଲୋ ହେଉଥିଲେ, ଚନ୍ଦ୍ରରେ ସେ ମାତ୍ର ଦୁଇ ଅଢେଇ କିଲୋ ଓଜନ ହେବ। ଆମ୍ଭମାନଙ୍କର ପୋଷାକର ପଛରେ ଝୁଲୁଥିବା ଜୀବନରକ୍ଷକବାକ୍ସ ଗୁଡ଼ିକ ବିଭିନ୍ନ ଯନ୍ତ୍ରପାତି ଭରା ହୋଇ ଅତି ଓଜନିଆ ହୋଇଥିଲେ ମଧ୍ୟ, ଚନ୍ଦ୍ରରେ ଏହାର ଓଜନ ୬ଗୁଣ କମ୍ ହୋଇଯିବା ଦ୍ୱାରା ଆମ୍ଭେମାନେ ସହଜରେ ସେଗୁଡ଼ିକୁ ପଛପଟେ ବୋହି ଚଳପ୍ରଚଳ ହୋଇ ପାରୁଛୁ।''

''ସମସ୍ତେ ଆସ, ମୋ ସହିତ ଡେଇଁବାରେ ଯୋଗ ଦିଅ, ବହୁତ ମଜା ହେବ।'' ଠେକୁଆ କଥା ଶେଷ କରି ଖପ୍ ଖପ୍ କରି ଡେଇଁବାକୁ ଆରମ୍ଭ କଲା। ଠେକୁଆ ସହିତ ପେଚା ମହାଶୟ ଓ କାଉ ମଧ୍ୟ ଯୋଗ ଦେଇଥିଲେ।

ମାଛ ଏକ ସ୍ଥାନରେ ବସି ରହି, ସ୍ପ୍ରିଂ ଲଗା କଣ୍ଢେଇ ଭଳି ଉଚ୍ଚରୁ ଉଚ୍ଚକୁ ଡେଇଁ ବୁଲୁଥିବା ଠେକୁଆ, କାଉ ଓ ପେଚା ମହାଶୟଙ୍କୁ ଚାହିଁ ରହିଲା। ଡେଇଁବା ପ୍ରତିଯୋଗୀତାରେ ଯୋଗଦେବା ପାଇଁ ମାଛକୁ ସମସ୍ତେ ଅନୁରୋଧ କରିଥିଲେ ମଧ୍ୟ, ତାକୁ ରାଜି କରାଇ ପାରିନଥିଲେ। କାରଣ ଗାତରେ ପଡ଼ିବାର ଭୟଙ୍କର ଅନୁଭୂତି ତା ମନରୁ ଯାଇନଥିଲା।

କିଛି ସମୟ ଡେଇଁ ବୁଲିଲା ପରେ ସମସ୍ତେ କ୍ଳାନ୍ତ ହୋଇ ପଡ଼ିଥିଲେ। ଠେକୁଆ ବିଶ୍ରାମ ନେବା ଉଦ୍ଦେଶ୍ୟରେ ଏକ ଛାୟାପ୍ରଦ ସ୍ଥାନର ସନ୍ଧାନ କରିବାକୁ ତତ୍ପର ହୋଇ ଉଠି ଚତୁର୍ଦ୍ଦିଗରେ ଘୂରି ବୁଲିଲା। କାଉ, ଠେକୁଆର ଉଦ୍ଦେଶ୍ୟ ବୁଝିପାରି କହିଉଠିଲା।

''ଛାଇଥିବା ଗଛ ଖୋଜୁଛ କି ଶ୍ୱେତାଙ୍ଗ ଭାଇ? ଗଛ ତ ଦୂରର କଥା, ଏ ଭୂଇଁରେ ଘାସ ରୁଆଟିଏ ବି ଖୋଜି ପାଇବ ନାହିଁ। ମୁଁ ଉଡ଼ି ବୁଲିବା ଚେଷ୍ଟାରେ ତଳେ ପଡ଼ିଯିବା ସମୟରେ ଚାରିଆଡ଼କୁ ଦୃଷ୍ଟି ପକାଇଥିଲି, ଯଦି ଆଖପାଖରେ କୌଣସି ଗଛ କିମ୍ବା ବୁଦା ଥିବ ତେବେ ତାହା ଉପରେ ବସି ପଡ଼ିବି। କିନ୍ତୁ, ଗୋଡ଼ି ପଥର ଓ ଗାତ ଗୁଡ଼ିକ ବ୍ୟତୀତ ଅନ୍ୟ କିଛି ମୋ ଦୃଷ୍ଟିରେ ପଡ଼ିନଥିଲା।''

''ସୁବୋଧ ଠିକ୍ କହୁଛି'' ପେଚାମହାଶୟ କହିଲେ ''ଚନ୍ଦ୍ରପୃଷ୍ଠ ବୃକ୍ଷ, ଲତା ଇତ୍ୟାଦି ଉଦ୍ଭିଦଜଗତ ବିହୀନ। କାରଣ ଗଛ ଲତା ଇତ୍ୟାଦିର ଉତ୍ପତ୍ତି ଅନୁକୂଳ ତିନୋଟି ମୁଖ୍ୟ ଉପାଦାନ ଯଥା:- ପାଣି, ପବନ ଓ ମାଟି, ଚନ୍ଦ୍ର ପୃଷ୍ଠରେ ଅନୁପସ୍ଥିତ। ପ୍ରଥମତଃ, ଚନ୍ଦ୍ରର ଦୁର୍ବଳ ମାଧ୍ୟାକର୍ଷଣ ଶକ୍ତି ଯୋଗୁଁ (ପୃଥିବୀ ମାଧ୍ୟାକର୍ଷଣ ଶକ୍ତିର ୧/୬) ବାୟୁମଣ୍ଡଳ ଚନ୍ଦ୍ରାକାଶରେ ରହି ନପାରି, ମହାଶୂନ୍ୟରେ ବିଲୀନ ହୋଇଯାଇଛି। ଜଳବାୟୁମଣ୍ଡଳର ଅନୁପସ୍ଥିତି ଯୋଗୁଁ, ଚନ୍ଦ୍ର ବର୍ଷାହୀନ। ତେଣୁ ଜଳଶୂନ୍ୟ। ବାୟୁର ଅନୁପସ୍ଥିତି ଯୋଗୁଁ ବାୟୁର ଏକ ଉପାଦାନ, ଅଙ୍ଗାରକାମ୍ଳ (Carbon dioxide) ଚନ୍ଦ୍ରରେ ନାହିଁ। ତୃତୀୟତଃ, ଜଳବାୟୁ ବିନା ଚନ୍ଦ୍ରପୃଷ୍ଠର ମାଟି ବୃକ୍ଷଲତା ଉପଯୋଗୀ ନୁହେଁ। ତୁମ୍ଭେମାନେ, ଛାୟାପ୍ରଦ ସ୍ଥାନରେ ବିଶ୍ରାମ କରିବାକୁ ଯଦି ଇଚ୍ଛା କରୁଛ, ତେବେ ମୋ ସହିତ ଯାନ ଭିତରକୁ ଆସ। ସେଠି କିଛି ସମୟ ବିଶ୍ରାମ କରି କ୍ଳାନ୍ତି ଦୂର କରିବ। ପରେ ବାହାରକୁ ଆସି ଅନ୍ୟାନ୍ୟ ଜରୁରୀ କାର୍ଯ୍ୟ କରିବ।''

ପେଚା ମହାଶୟଙ୍କ କଥା ଶୁଣି ଠେକୁଆ କହି ଉଠିଲା।

''ପ୍ରକୃତ ପକ୍ଷେ, ଆମ୍ଭେମାନେ ଅତି ବେଶୀ କ୍ଳାନ୍ତ ହୋଇନାହୁଁ। ତେଣୁ ଆମେ ତିନିଜଣ ଆଉ କିଛି ସମୟ ଏକାଠି ମଉଜ ମଜଲିସ୍ କରି ବିତାଇବାକୁ ଇଚ୍ଛା କରୁଛୁ। ଚନ୍ଦ୍ରପୃଷ୍ଠରେ, ମଜା କରିବାର ସୁଯୋଗ ଜୀବନରେ କାହାକୁ କେତେ ଥର ମିଳିଥାଏ? ସତ କଥା ନା ଧୀରଜ ଭାଇ? ସୁବୋଧ ଭାଇ?''

କ୍ଳାନ୍ତ ହୋଇ ପଡ଼ିଥିଲେ ମଧ, କାଉ ଓ ମାଛ, ଠେକୁଆକୁ ଖୁସି କରିବା ପାଇଁ ମୁଣ୍ଡ ଟୁଙ୍ଗାରି ସମ୍ମତି ପ୍ରକାଶ କଲେ।

ପେଚାମହାଶୟ, ପଶୁପକ୍ଷୀ ତିନି ଜଣଙ୍କୁ, ଯାନର ଆଖପାଖରେ ରହି ସମୟ ବିତାଇବାକୁ ନିର୍ଦ୍ଦେଶ ଦେଇ, ନିଜେ ବିଶ୍ରାମ କରିବା ଉଦ୍ଦେଶ୍ୟରେ ଯାନ ମଧକୁ ପ୍ରସ୍ଥାନ କଲେ।

# ସପ୍ତମ ପରିଚ୍ଛେଦ

**ପଶୁପକ୍ଷୀ** ତିନିଜଣ ଯାନର ବାହାରେ ବସି ରହି, ଆମୋଦ ପ୍ରମୋଦ ପାଇଁ କି ବ୍ୟବସ୍ଥା କରିବେ ତାହା ଭାବିବାକୁ ଲାଗିଲେ। କିନ୍ତୁ ସେପରି କୌଣସି କାର୍ଯ୍ୟ ଚିନ୍ତା କରି ସେମାନେ ସ୍ଥିର କରି

ପାରିଲେ ନାହିଁ। କିଛି ସମୟ ଅତିବାହିତ ହୋଇଗଲା। ଶେଷରେ କାଉ ଆରମ୍ଭ କଲା।

"ସମସ୍ତେ ଚାଲ ଏକ ପ୍ରତିଯୋଗୀତା କରିବା। ତାହା ହେଲା, କିଏ କେତେ ଦୂର ପର୍ଯ୍ୟନ୍ତ ପଥର ଫିଙ୍ଗି ପାରିବ।"

"ସେପରି ଖେଳ ବୋକାମାନଙ୍କୁ ଯୋଗାଏ। ଆମ ପାଇଁ ନୁହେଁ", ଠେକୁଆ କହି ଉଠିଲା।

"ତା ହେଲେ ଚାଲ ଲୁଚକାଳି ଖେଳିବା।" କାଉ କହିଲା।

"ନା.......ନା। ଲୁଚକାଳି ପିଲାଙ୍କ ଖେଳ। ଆମ ବୟସର ପ୍ରାଣୀଙ୍କ ପାଇଁ ନୁହେଁ" ଠେକୁଆ କହିଲା।

"ତେବେ ତୁମମାନଙ୍କ ମଧ୍ୟରୁ ଯଦି କାହାର ଆଧୁନିକ କବିତା ଶୁଣିବାରେ ଆଗ୍ରହ ଥାଏ, ତେବେ କବି, ଅର୍ଥାତ୍ ମୁଁ ସେ କବିତା ପାଠକରି ଶୁଣାଇବାକୁ ପ୍ରସ୍ତୁତ ଅଛି। ଏଠି ଚନ୍ଦ୍ରପୃଷ୍ଠର ଅଭିନବ ଦୃଶ୍ୟାବଳୀଗୁଡିକରୁ ପ୍ରେରଣା ପାଇ ମୁଁ ସେ କବିତାଗୁଡ଼ିକ ରଚନା କରିଛି।" କାଉ କହିଲା।

"ନିଶ୍ଚୟ....ନିଶ୍ଚୟ....ତୁମେ ଆରମ୍ଭ କର। ଆମେ ତୁମର କବିତା ଶୁଣିବାକୁ ଅତି ଉତ୍ସୁକ।" ମାଛ କାଉକୁ ଉତ୍ସାହ ପ୍ରଦାନ କରି କହି ଉଠିଲା। କାରଣ ସେ ଖାଲିଟାରେ ବସି ବସି ବିରକ୍ତ ହୋଇ ଯାଇଥିଲା।

"ଧନ୍ୟବାଦ୍", କାଉ ଆରମ୍ଭ କଲା "ମୁଁ ତୁମକୁ ମୋର ପ୍ରଥମ ରଚନାଟି ଶୁଣାଇବି। ଏହା ଏକ ଶିଶୁସଂଗୀତ (Nursery Rhyme) ଯାହା ତୁମ୍ଭେମାନେ ପୂର୍ବରୁ ଶୁଣିଥିବ ନିଶ୍ଚୟ। କିନ୍ତୁ ମୁଁ ସେହି ଶିଶୁସଂଗୀତ (Nursery Rhyme)ର ଆଧୁନିକ ମହାକାଶ ଯୁଗର ସଂସ୍କରଣଟି ରଚନା କରିଛି। ତାହା ପାଠ କରି ଶୁଣାଇବି। ଶୁଣ।

"Jack & Jill went up to moon"
To fetch a pail of water
"Jack and Jill looked here and there"
But all they found were craters
"Stones up here and hills up there"
Dry and barren land
"That made Jack mad and Jill so sad"
They went back hand in hand."

"ବାଃ.....ବାଃ......କି ଚମତ୍କାର !!...କି ଭାବପୂର୍ଣ୍ଣ ଆଧୁନିକ ଶିଶୁ କବିତା !!" ମାଛ ଉଚ୍ଚ ସ୍ୱରରେ ପ୍ରଶଂସା କରି କହିଲା। ଠେକୁଆ କୌଣସି ମତ ପ୍ରକାଶ ନ କରି ନୀରବ ରହିଲା।

"ଏହାର ପରବର୍ତ୍ତୀ ରଚନା ଚନ୍ଦ୍ରପୃଷ୍ଠରେ ମହାକାଶ ଯୁଗର ପ୍ରଣୟୀ ମାନଙ୍କ ପାଇଁ ଓମର ଖୟାମଙ୍କ ରୁବାୟତ କବିତାର ଛାୟାରେ, ମୋ ଦ୍ୱାରା ରଚିତ ହୋଇଛି, ଶୁଣନ୍ତୁ।"

"Here beneath the black lunar sky
Inside silvery space suits"
"Sipping water from the tubes
Hopping like Kangaroos"

"You and me, together wow!!
This barrenness is paradise now."

''ଓଃ.......କି ଅତ୍ୟାଧୁନିକ ରଚନା !! କି ଉଚ୍ଚକୋଟୀର କବିତା ଏ !''

''ଧନ୍ୟବାଦ'' କାଉ କହିଲା। ''ତୁମ୍ଭମାନଙ୍କ ମନୋରଞ୍ଜନ କରିବାର ସୌଭାଗ୍ୟ ମୋର। ଚନ୍ଦ୍ରପୃଷ୍ଠର ଏ ପ୍ରଶସ୍ତ ଖୋଲାଭୂମି ମୋ ଦୃଷ୍ଟିରୁ ସମ୍ପୂର୍ଣ୍ଣ ମୂଲ୍ୟହୀନ ନୁହେଁ। କାରଣ, ମୋ ଭଳି କଳାକାରଙ୍କୁ ପ୍ରେରଣା ଦେବା ସହ ଏ ସ୍ଥାନ କ୍ରୀଡ଼ା କିମ୍ବା ଭୋଜିଭାତ ପାଇଁ ମଧ୍ୟ ଏକ ଆଦର୍ଶ ସ୍ଥଳି।''

''ଭୋଜି ଭାତ !! ବାଃ ଅତି ଚମତ୍କାର ପ୍ରସ୍ତାବ। ସୁବୋଧ ଭାଇ, ତୁମର ପରିକଳ୍ପନା ପାଇଁ ଧନ୍ୟବାଦ୍। ବର୍ତ୍ତମାନ ଆମେ ମଜା କରିବା। ଆମ୍ଭେମାନେ ଅତି ବଡ଼ ଧରଣର ନ ହେଲେ ମଧ୍ୟ ଅନ୍ତତଃ ଏକ ଛୋଟକାଟର ଚା ଭୋଜି କରିବା....। କ୍ଲାନ୍ତ ହୋଇ ପଡ଼ିଥିବା ବେଳେ, ଗୋଟେ କପ୍ ଗରମାଗରମ୍ ଚା ଭଳି ଅନ୍ୟ କୌଣସି ଖାଦ୍ୟ କିମ୍ବା ପାନୀୟ, ଦେହ ଓ ମନରେ ଫୁର୍ତ୍ତି ଆଣି ପାରେ ନାହିଁ। ସତ ନା ମିଛ ?''

ଠେକୁଆ ସହ ଏକ ମତ ହୋଇ, ମାଛ ଓ କାଉ ଦୁହେଁ ଉତ୍ତେଜିତ ସ୍ୱରରେ କହି ଉଠିଲେ, ''ସତ କଥା.....ତୁମେ ଠିକ୍ କହିଛ ଶ୍ୱେତାଙ୍ଗ ଭାଇ। ଚାଲ, ଚା ଭୋଜି କରିବା।''

''ତାହେଲେ ତୁମେ ଦୁଇଜଣ ଯାଅ। ତିନି ଖଣ୍ଡ ମଧ୍ୟମ ଆକାରର ପଥର ଯୋଗାଡ଼ କରି ଆଣ। ଆମେ ଚୂଲ୍ଲି ତିଆରି କରିବା। ମୁଁ ଯାନ ଭିତରକୁ ଯାଉଛି। ନିଆଁ ଜଳାଇବା ପାଇଁ କିଛି ଅଦରକାରୀ କାଗଜପତ୍ର ଓ ଚା ତିଆରି କରିବାକୁ ଚାହା ଓ ପାଣି ଇତ୍ୟାଦି ନେଇ ଆସିବି।'' ଏପରି କହି, ଠେକୁଆ ଖୁସିରେ ସିଟି ବଜାଇ, ଡ଼େଇଁ ଡ଼େଇଁ ଯାନ ମଧ୍ୟକୁ ପ୍ରସ୍ଥାନ କଲା।

ମାଛ ଓ କୁଆ ଦୁହେଁ, ଠେକୁଆ କହିବା ମୁତାବକ ପଥର ତିନିଖଣ୍ଡ ସଂଗ୍ରହ କରି ଆଣି ଭୂମିରେ ଚୂଲ୍ଲି ତିଆରି କରିଦେଲେ। ଠେକୁଆ ଯାନ ମଧ୍ୟରୁ ଚା ଭୋଜି ପାଇଁ ସମସ୍ତ ସରଞ୍ଜାମ ନେଇ ଆସିଲା। ତାପରେ ନିଜ ପକେଟରୁ ଦିଆସିଲି ପ୍ୟାକେଟ୍‌ଟି କାଢ଼ିଲା।

''ଶ୍ୱେତାଙ୍ଗ ଭାଇ,'' ମାଛ ହସ ହସ ମୁଖରେ କହିଲା, ''ତୁମେ ଦିଆସିଲି ପ୍ୟାକେଟ୍ ମଧ୍ୟ ଚନ୍ଦ୍ରକୁ ଆଣିଛ ?''

''ଅବଶ୍ୟ......ଦିଆସିଲି ପାଖରେ ଥିଲେ ବହୁତ କାମକୁ ଆସିବ।'' ଠେକୁଆ ହସି ହସି ଉତ୍ତର ଦେଲା। ''ମୋର, ପିଲାଦିନରୁ ଏହା ଏକ ବଦ୍ଧମୂଳ ଧାରଣା। ଏଇ ଦେଖ, ଚା ଭୋଜି ପାଇଁ କିପରି ହଠାତ୍ ପ୍ରୟୋଜନ ହେଲା। ଆଉ ମଧ, ମୁଁ ଶୁଣିଥିବା ଗଳ୍ପର ଠେକୁଆ ଭଳି ଯଦି ଦୈବାତ୍ ଚନ୍ଦ୍ର ଦେବ ମୋ ଉପରେ ପ୍ରୀତ ହୋଇ ସାମ୍ନାରେ ଆବିର୍ଭୂତ ହୋଇଯିବେ, ତେବେ ମୁଁ ମଧ୍ୟ ଚଟ୍ କରି ଦିଆସିଲିର ପ୍ରୟୋଗରେ ନିଁଆ ଜାଳି, ସେଥିରେ ନିଜକୁ ଝାସ ଦେଇ ଯୁଗ ଯୁଗକୁ ଅମର ହୋଇଯିବି।''

ମାଛ ଓ କାଉ ଦୁହେଁ, ଠେକୁଆ କଥା ଶୁଣି ହସି ପକାଇଲେ। କାଉ କହିଲା, ''ଶ୍ୱେତାଙ୍ଗ ଭାଇ, ତୁମେ ଆମକୁ ତୁମର ହିରୋ, ସେ ଠେକୁଆର ଗପଟି କହି ଶୁଣାଅ।''

''ହଁ........ହଁ, ତୁମେ ସେ ଗପଟି କୁହ। ମତେ ମଧ୍ୟ ଗପ ଶୁଣିବାକୁ ବହୁତ ଭଲ ଲାଗେ।'' ମାଛ କାଉ ସହିତ ଯୋଗ ଦେଇ କହି ଉଠିଲା।

''ଠିକ୍ ଅଛି। ମୁଁ ତୁମକୁ ସେ ଠେକୁଆର କାହାଣୀ କହିବି। ଶୁଣ'', ଠେକୁଆ ଆରମ୍ଭ କଲା--

''ଘୋର ଜଙ୍ଗଲ ଭିତରେ ଠେକୁଆଟିଏ ଘର କରି ରହିଥିଲା। ଚନ୍ଦ୍ର ତାର ଅତି ପ୍ରିୟ ଥିଲେ। ଚନ୍ଦ୍ରଙ୍କର ଉଜ୍ଜ୍ୱଳ ରୂପ, ଶୀତଳ ସ୍ପର୍ଶ ତାର ଦେହ ଓ ମନରେ ଆନନ୍ଦ ସଞ୍ଚାର କରୁଥିଲା। ଶୁକ୍ଳପକ୍ଷରେ, ସବୁଦିନ ରାତିରେ ସେ ଚନ୍ଦ୍ର ଉଦୟ ହୋଇ ଅସ୍ତ ହେବାଯାଏ ଏକ ଯାଗାରେ ବସି, ଆତ୍ମବିଭୋର ହୋଇ ଚନ୍ଦ୍ରଙ୍କୁ ଚାହିଁ ରହୁଥିଲା। କୃଷ୍ଣପକ୍ଷରେ ଚନ୍ଦ୍ରଙ୍କର କ୍ଷୟ ଦେଖି ତାର ହୃଦୟ ଦୁଃଖରେ ଭରି ଉଠୁଥିଲା ଓ ଚନ୍ଦ୍ରହୀନ ଅମାବାସ୍ୟା ରାତି ଠେକୁଆ ପାଇଁ ଅତି ଦୁର୍ବହ ମନେ ହେଉଥିଲା। ଚନ୍ଦ୍ରଙ୍କୁ ସେ ତା'ର ଇଷ୍ଟଦେବ ରୂପେ ପୂଜା କରୁଥିଲା। ଠେକୁଆର ହୃଦୟରେ ଏକମାତ୍ର କାମନା ଥିଲା କି ସେ ଚନ୍ଦ୍ର ସହିତ ବାସ କରିବ। ତା'ହେଲେ ସବୁବେଳେ ସେ ଚନ୍ଦ୍ରଙ୍କର ପୂର୍ଣ୍ଣ ଉଜ୍ଜ୍ୱଳ ରୂପ ଦେଖିବାକୁ ପାଇବ। ଦିନେ ଠେକୁଆ ସ୍ଥିର କଲା, ଚନ୍ଦ୍ରଙ୍କୁ ପ୍ରୀତ କରିବାକୁ ସେ ଚାନ୍ଦ୍ରାୟଣ ବ୍ରତ କରିବ। ସେ ବ୍ରତର ପୂଜା ପଦ୍ଧତି ଅତି କଠିଣ ଥିଲା। ବ୍ରତର ନିୟମାନୁଯାୟୀ, ସବୁଦିନ ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ଯାଏ ନିର୍ଜଳା ଉପବାସ କରି ସନ୍ଧ୍ୟାବେଳେ ଚନ୍ଦ୍ର ପୂଜା ସହ ଯେ କୌଣସି ଜଣେ ଅତିଥିଙ୍କୁ ଖୁଆଇ ସନ୍ତୁଷ୍ଟ କରିବ। ତା'ପରେ ଉପବାସ ଭଙ୍ଗ କରିବ। ଯଦି ସନ୍ଧ୍ୟା ସୁଦ୍ଧା କୌଣସି ଅତିଥି ନ ମିଳିବେ, ତେବେ ଉପବାସ ନ ଭାଙ୍ଗି, ତା'ପର ଦିନ ସନ୍ଧ୍ୟା ପର୍ଯ୍ୟନ୍ତ ସେପରି ରହିବାକୁ ପଡ଼ିବ। ଠେକୁଆ ବ୍ରତ ଆରମ୍ଭ କଲା। ଏପରି କିଛି ଦିନ ବିତିଗଲା। କୃଷ୍ଣପକ୍ଷ ଯାଇ ଶୁକ୍ଳପକ୍ଷ ଆସିଲା। ଥରେ ଲାଗି ଲାଗି କେତେ ଦିନ, କେହି ଅତିଥି ଠେକୁଆକୁ ମିଳିଲେ ନାହିଁ। ଅତିଥି ଚର୍ଚ୍ଚା ନ କରି ନିଜେ ଖାଇବା ବ୍ରତର ନିୟମ ବିରୁଦ୍ଧ। ତେଣୁ ଠେକୁଆ ପୂର୍ବଭଳି ଉପବାସ କରି ଚାଲିଲା। ଖାଦ୍ୟପେୟ ବିନା ତାର ଦେହ ଦୁର୍ବଳ ହୋଇଗଲା। କ୍ରମେ ସେ ଚଲାବୁଲା କରିବାକୁ ଅକ୍ଷମ ହୋଇପଡ଼ିଲା। ତଥାପି ଠେକୁଆ ଅଟଳ ରହି ବ୍ରତ କରି ଚାଲିଲା। ଶେଷରେ ପୂର୍ଣ୍ଣମୀ ଆସିଲା। ରାତ୍ରିରେ ଆକାଶରେ ପୂର୍ଣ୍ଣଚନ୍ଦ୍ର ଉଦୟ ହୋଇ ସାରା ବନସ୍ଥଳୀ ଆଲୋକିତ କରିଦେଲେ। ଚନ୍ଦ୍ରଙ୍କୁ ଦେଖି ଠେକୁଆର ହୃଦୟ ମହାନନ୍ଦରେ ନାଚି ଉଠିଲା। ସେ ତାର ଦୁର୍ବଳ ଶରୀରକୁ ଟାଣି ଓଟାରି ଏକ ଉଚ୍ଚ ସ୍ଥାନରେ ବସି ଯାଇ, ଚନ୍ଦ୍ରଙ୍କର ପୂର୍ଣ୍ଣ ଉଜ୍ଜ୍ୱଳ ରୂପ ଉପଭୋଗ କରିବାକୁ ଲାଗିଲା। ରାତି ବଢ଼ି ଚାଲିଲା। ଚନ୍ଦ୍ର ଆକାଶରେ ଉପରକୁ ଉଠି ଚାଲିଲା। ପଛରୁ କାହାର କଣ୍ଠସ୍ୱର ଶୁଣି ଠେକୁଆର ଧ୍ୟାନ ଭଙ୍ଗ ହେଲା। ସେ ଚମକି ପଛକୁ ଚାହିଁ ଦେଖିଲା, ଜଣେ ଭିକ୍ଷୁକ ଛିଣ୍ଡା ଲୁଗା ପିନ୍ଧି ଚନ୍ଦ୍ରକିରଣରେ ଛିଡ଼ା ହୋଇଥିଲା।

''ମୁଁ ତୁମର ଅତିଥି।'' ଭିକ୍ଷୁକ କହିଲା। ''ଭୋକ ଶୋଷରେ ମୋର ହଂସା ଉଡୁଛି। ତୁମର ଅତିଥି ସତ୍କାରର ପ୍ରଶଂସା ଶୁଣି ମୁଁ ବହୁ ଦୂରରୁ ଚାଲି ଚାଲି ତୁମ ପାଖକୁ ଆସିଛି। ମତେ ଶୀଘ୍ର କିଛି ଖାଇବାକୁ ଦିଅ। ନ ହେଲେ ମୋର ପ୍ରାଣ ଚାଲିଯିବ।''

''ବହୁଦିନ ପରେ ଜଣେ ଅତିଥିଙ୍କୁ ପାଇ ଠେକୁଆ କୃତକୃତ୍ୟ ହୋଇଗଲା। ସେ ଅତିଥିଙ୍କୁ ଏକ ନରମ ଘାସର ବିଛଣା ଉପରେ ବସାଇ ଖାଇବା ଆଣିବାକୁ ଗଲା। କିନ୍ତୁ ସେ ସମୟରେ ଅତିଥିଙ୍କର ଖାଦ୍ୟ ଉପଯୋଗୀ କୌଣସି ପଦାର୍ଥ ସେ ପାଇଲା ନାହିଁ। ରାତି ବେଶୀ ହୋଇ ଯାଇଥିଲା। ଶରୀରର ଦୁର୍ବଳତା ଯୋଗୁ ସେ ଦୂରକୁ ଯାଇ ଅତିଥିଙ୍କ ପାଇଁ ଖାଦ୍ୟ ସଂଗ୍ରହ କରି ଆଣିବାକୁ ଅସମର୍ଥ ହେଲା। ତେଣୁ ସେ ଖାଲି ହାତରେ ଅତିଥିଙ୍କ ନିକଟକୁ ଫେରିଆସି, ହାତଯୋଡ଼ି

କହିଲା --

''ଅତିଥି ମହାଶୟ। ଆପଣ ମୋ ଦ୍ୱାରକୁ ଆସିଥିବାରୁ ମୁଁ ନିଜକୁ ଧନ୍ୟ ମନେ କରୁଛି। ଆପଣଙ୍କର ଯଥୋଚିତ ଚର୍ଚ୍ଚା କରି ସନ୍ତୁଷ୍ଟ କରିବା ମୋର ଧର୍ମ ଓ କର୍ତ୍ତବ୍ୟ। କିନ୍ତୁ 'ବର୍ତ୍ତମାନ, ଆପଣଙ୍କ କ୍ଷୁଧା ନିବାରଣ କରିବାକୁ ମୋର ଶରୀର ବ୍ୟତୀତ ଅନ୍ୟ କୌଣସି ପଦାର୍ଥ ମୋ ପାଖରେ ନାହିଁ। ତେଣୁ ଆପଣ ଅନୁଗ୍ରହ କରି ମୋର ଏ ଶରୀରକୁ ଗ୍ରହଣ କରନ୍ତୁ। ଏଇ ଅଳ୍ପ କ୍ଷଣ ମଧ୍ୟରେ ମୋର ଶରୀର, ଜ୍ୱଳନ୍ତ ଅଗ୍ନିରେ ସିଦ୍ଧ ହୋଇ ଆପଣଙ୍କ ଭୋଜନ ଉପଯୋଗୀ ହୋଇଯିବ। ଆପଣ ତଦ୍ୱାରା ଆପଣଙ୍କ କ୍ଷୁଧା ମେଣ୍ଟାଇବେ।'' ଏପରି କହି ଠେକୁଆ, ଆଖପାଖରୁ ଶୁଖିଲା ଡ଼ାଳପତ୍ର ଏକାଠି କରି ନିଆଁ ଜଳାଇଲା ଓ ଅତି ଶୀଘ୍ର ସେ ଜଳନ୍ତା ନିଆଁ ଭିତରକୁ ଡ଼େଇଁ ପଡ଼ିଲା। କିନ୍ତୁ ସେ ଜଳନ୍ତା ନିଆଁ ଠେକୁଆର ଶରୀରକୁ ଶୀତଳ ଚନ୍ଦନର ଲେପ ଭଳି ବୋଧ ହେଲା। ନିଆଁ ତାର ଶରୀର ତ ଦୂରର କଥା, ତାର ଗୋଟିଏ ଲୋମ ମଧ୍ୟ ସ୍ପର୍ଶ କଲା ନାହିଁ। ଠେକୁଆ ଆଚମ୍ବିତ ହୋଇ ବାହାରକୁ ଅତିଥିଙ୍କ ଆଡ଼କୁ ଚାହିଁଲା। ଦେଖିଲା, ଭିକ୍ଷୁକ ପରିବର୍ତ୍ତେ ସେ ସ୍ଥାନରେ ଦିବ୍ୟ ବସନ ଓ ଅଳଙ୍କାର ଭୂଷିତ ଏକ ତେଜସ୍ୱୀ ପୁରୁଷ ଛିଡ଼ା ହୋଇଛନ୍ତି। ଠେକୁଆକୁ ଚାହିଁ ସେ ତେଜସ୍ୱୀ ପୁରୁଷ ଜଣକ ହସି କହିଲେ --

''ମୁଁ ଚନ୍ଦ୍ରଦେବ। ତୁମର ନିଷ୍ଠା ଓ ତ୍ୟାଗ ପରୀକ୍ଷା କରିବା ପାଇଁ, ମୁଁ ଭିକ୍ଷୁକ ରୂପ ଧାରଣ କରି ତୁମ ପାଖକୁ ଆସିଥିଲି। ତୁମେ ପ୍ରକୃତରେ ଧନ୍ୟ। ତୁମର ଅତିଥି ସତ୍କାରରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି। ତେଣୁ ମୁଁ ତୁମର ଇଚ୍ଛା ପୂର୍ଣ୍ଣ କରିବି। ତୁମେ ମୋ ସହିତ ଚିରକାଳ ବାସ କରିବ। ତୁମର ମୋ ପ୍ରତି, ତ୍ୟାଗ ଓ ନିଷ୍ଠାର ଏ ଜ୍ୱଳନ୍ତ ଦୃଷ୍ଟାନ୍ତ ଯୁଗ ଯୁଗକୁ ସ୍ମରଣୀୟ ହୋଇ ରହିବ। ଏହା କହି ଚନ୍ଦ୍ରଦେବ, ଠେକୁଆକୁ ଅଗ୍ନି ମଧ୍ୟରୁ ଉଠାଇ ଆଣି ନିଜ ବକ୍ଷରେ ଲଗାଇ ଅନ୍ତର୍ଦ୍ଧାନ ହୋଇଗଲେ। ସେହି ଦିନରୁ ଚନ୍ଦ୍ର ବକ୍ଷରେ ସେ ଠେକୁଆର ରୂପ ପୃଥିବୀ ପୃଷ୍ଠରୁ ଦେଖାଯାଏ।'' ଠେକୁଆ କଥା ଶେଷ କଲା।

''ଅତି ସୁନ୍ଦର ଗପ।'' ମାଛ କହି ଉଠିଲା।

''ଗପଟି ମତେ ମଧ୍ୟ ଭଲ ଲାଗିଲା।'' କାଉ କହିଲା। ''ଶ୍ୱେତାଙ୍ଗ ଭାଇ, ଏବେ ଚନ୍ଦ୍ରଲୋକରେ ତ ପହଞ୍ଚି ଗଲଣି। ଖାଲି ବାକି ଅଛି ଚନ୍ଦ୍ରଦେବ ଓ ତାଙ୍କ ସହଚର, ଠେକୁଆଟିକୁ ଖୋଜି ବାହାର କରିବା।'' କାଉ ହସୁ ହସୁ କହିଲା।

''ବର୍ତ୍ତମାନ ଆସ ଚା ଭୋଜି ଆରମ୍ଭ କରିବା।'' ଠେକୁଆ ଏହା କହିବା ସହ, ଅଦରକାରୀ କାଗଜପତ୍ର ଗୁଡ଼ିକୁ ସେମାନଙ୍କର ପଥର ଚୂଲ୍ଲି ତଳେ ରଖି, ନିଆଁ ଜଳାଇବାକୁ ଦିଆସିଲି ମାରିଲା। ଏକ୍, ଦୁଇ, ତିନ୍,... ଯେତେଥର ଦିଆସିଲି କାଠି ଦିଆସିଲିରେ ଘସି ଜଳାଇବାକୁ ଚେଷ୍ଟା କଲା, କାଠି ଜଳିବା ତ ଦୂରର କଥା, ନିଆଁର ସ୍ଫୁଲିଙ୍ଗ କିମ୍ବା କଣିକା ମଧ୍ୟ ସୃଷ୍ଟି ହେବା ଦେଖାଗଲା ନାହିଁ।

''ତୁମେ ପାରିବନି। ମତେ ସେ ଦିଆସିଲି ଦିଅ। ମୁଁ ଆଖି ପିଛୁଳାକେ ଜଳାଇ ଦେବି।'' ଏପରି କହି କାଉ ଠେକୁଆ ହାତରୁ ଦିଆସିଲିଟି ଛଡ଼ାଇ ନେଲା। କାଉ ଦିଆସିଲି ମାରି ନିଆଁ ଜଳାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ ବିଫଳ ହେଲା।

''ତୁମମାନଙ୍କୁ ଦିଆସିଲି ଜଳାଇବାର କାଇଦା ଜଣାନାହିଁ। ଦିଅ ମୁଁ ଜଳାଇଦେବି'' ମାଛ

ଏପରି କହି କାଉଠାରୁ ଦିଆସିଲି ଛଡ଼ାଇ ନେଇ ଜଳାଇବାକୁ ଚେଷ୍ଟା କଲା । କିନ୍ତୁ ସେଇ ଏକା କଥା । ନିଆଁର ରେଖାଟିଏ ମଧ୍ୟ ଦେଖା ଗଲାନାହିଁ ।

ଦିଆସିଲି ବାକ୍ସ ଉପରୁ ବାରୁଦ ଟିକକ ଖସି ପଡ଼ିଛି ଭାବି ପଶୁପକ୍ଷୀ ତିନିଜଣ କାଠିଗୁଡ଼ିକ ପଥର ଉପରେ, ଟୋପି ଉପରେ, ଜୋତା ତଳେ ଘସି ଜଳାଇବାକୁ ଚେଷ୍ଟା କଲେ । ସବୁ ବିଫଳ ହେଲା । ନିରାଶ ହୋଇ ପଶୁପକ୍ଷୀମାନେ, ଯାହା ମନକୁ ଯାହା ଆସିଲା, ସେହିପରି ଉପାୟରେ ଦିଆସିଲି ଜଳାଇବା ଚେଷ୍ଟାରେ ଲାଗିଗଲେ ।

ପେଚା ମହାଶୟଙ୍କ ଦୃଷ୍ଟି ଯାନ ବାହାରେ, ପଶୁପକ୍ଷୀଙ୍କ ଉପରେ ପଡ଼ିଥିଲା । ସେ ଯାନ ମଧ୍ୟରୁ ସେମାନଙ୍କର ବିଶୃଙ୍ଖଳ କାର୍ଯ୍ୟ କଳାପ ଲକ୍ଷ୍ୟ କରି ବାହାରକୁ ଆସି ସେମାନଙ୍କ ନିକଟରେ ଉପସ୍ଥିତ ହେଲେ ।

''କଥା କଣ ?'' ପେଚା ମହାଶୟ **ପ୍ରଶ୍ନ** କଲେ ''ତୁମେ ଏପରି ବିବ୍ରତ ଭାବେ ଘୂରିବୁଲି କି କାର୍ଯ୍ୟ କରୁଛ ?'' ''ଆମେ ଦିଆସିଲି ଜଳାଇବାକୁ ଚେଷ୍ଟା କରୁଛୁ'' ଠେକୁଆ କହି ପକାଇଲା ''ଆପଣ ଠିକ୍ ସମୟରେ ଆସି ପହଞ୍ଚିଗଲେ । ଜ୍ଞାନୀ ମହାଶୟ, ଆପଣଙ୍କ ପାଖରେ ଯଦି ଗୋଟେ ନୂଆ ଦିଆସିଲି ବାକ୍ସ ଅଛି ଆମକୁ ଦିଅନ୍ତୁ କିମ୍ବା ଆମକୁ ନିଆଁ ଲଗାଇବା କୌଣସି ନୂତନ ଉପାୟ ଶିଖାଇ ଦିଅନ୍ତୁ'' ଠେକୁଆ ଅନୁରୋଧ କଲା ।

ପେଚାମହାଶୟ ପଶୁପକ୍ଷୀଙ୍କ ବ୍ୟସ୍ତତା ଦେଖି ହସି କହିଲେ,

''ଚନ୍ଦ୍ରପୃଷ୍ଠରେ କେହି, କୌଣସି ଉପାୟରେ ନିଆଁ ଜଳାଇବାକୁ ସକ୍ଷମ ହୋଇ ପାରିବ ନାହିଁ। କାରଣ ନିଆଁ ଜଳିବା ପାଇଁ ପବନରେ ଥିବା ଏକ ଉପାଦାନ, ଅମ୍ଳଜାନ ଆବଶ୍ୟକ। କିନ୍ତୁ ତୁମ ସମସ୍ତଙ୍କୁ ଜଣା ଅଛି ଯେ, ଚନ୍ଦ୍ରପୃଷ୍ଠ ବାୟୁହୀନ। ବାୟୁରେ ଥିବା ଅମ୍ଳଜାନ ବିନା, ନିଆଁ ଜଳାଇବା ଅସମ୍ଭବ। ଏହାର ପ୍ରମାଣ ସ୍ୱରୂପ, ତୁମେ ଭୂପୃଷ୍ଠକୁ ଫେରିଲା ପରେ ଏକ ମହମବତୀ ଜଳାଇ ଦେଖିବ ଯେ, ଯେ ପର୍ଯ୍ୟନ୍ତ ତାହା ବାହାରେ ଥିବ ସେ ପର୍ଯ୍ୟନ୍ତ ଜଳୁଥିବ। କାରଣ ବାହାର ପବନରେ ଅମ୍ଳଜାନ ଅଛି। କିନ୍ତୁ ଏହି ମହମବତୀ ଉପରେ ଏକ କାଚ ଗିଲାସ ଘୋଡ଼ାଇ ଦେଲେ ଦେଖିବ, ମହମବତୀର ଆଲୁଅ ଧୀରେ ଧୀରେ କମି ଆସି ଶେଷରେ ଲିଭିଯିବ। କାରଣ, ଯେ ପର୍ଯ୍ୟନ୍ତ ଗିଲାସ ମଧ୍ୟରେ ଅମ୍ଳଜାନ ଅଛି ସେ ପର୍ଯ୍ୟନ୍ତ ତାହା ଜଳୁଥାଏ। କିନ୍ତୁ ଗିଲାସ ମଧ୍ୟରୁ ଅମ୍ଳଜାନ ବତୀ ଜଳିବା ଦ୍ୱାରା ଧୀରେ ଧୀରେ କ୍ଷୟ ହୋଇ ଶେଷ ହୋଇଯିବା ଦ୍ୱାରା ବତୀଟି ଲିଭିଯାଏ। ଆଉ ମଧ୍ୟ ତୁମର ଚା ଭୋଜି ପାଣି ଗରମ କରିବାକୁ ତୁମ ପାଇଁ ନିଆଁର ଆବଶ୍ୟକତା ନାହିଁ। ଏଠି ସୂର୍ଯ୍ୟଙ୍କ ପ୍ରଚଣ୍ଡ ଉତ୍ତାପ, ସେ କାର୍ଯ୍ୟ ଅତିଶୀଘ୍ର କରିଦେବ। ବର୍ତ୍ତମାନ ତୁମେମାନେ ଚାହିଁ ଦେଖ। ତୁମ୍ଭର ଜଳପୂର୍ଣ୍ଣ ପାତ୍ର ସୂର୍ଯ୍ୟଙ୍କ ପ୍ରଚଣ୍ଡ ଉତ୍ତାପରେ ଉତ୍ତପ୍ତ ହୋଇ ବାଷ୍ପାକାରରେ ମହାଶୂନ୍ୟରେ ବିଲୀନ ହୋଇ ଯିବଣି।''

ପେଚା ମହାଶୟଙ୍କ କଥା ଶୁଣି ପଶୁପକ୍ଷୀମାନେ ଚୂଲ୍ଲି ଉପରେ ରଖା ହୋଇଥିବା ଜଳପାତ୍ର ମଧ୍ୟକୁ ଚାହିଁ ଦେଖିଲେ। ସତକୁ ସତ ପାତ୍ର ଜଳଶୂନ୍ୟ ହୋଇଯାଇଥିଲା। ପେଚାମହାଶୟଙ୍କ କଥା ଶୁଣି, ମାଛ ଦୀର୍ଘ ନିଃଶ୍ୱାସ ଛାଡ଼ି କହିବାକୁ ଲାଗିଲା। ''କି ଅସମ୍ଭବ ଜାଗା ଏ !! ପାଣି ନାହିଁ, ପବନ ନାହିଁ, ଗଛଲତା କି ଜୀବଜନ୍ତୁ ମଧ୍ୟ ନାହିଁ। ଏପରି ରକ୍ଷ, ଟାଙ୍ଗର, ଧୂଳି ପଥର ଭରା ମରୁଭୂମୀ ଭଳି ଜାଗାକୁ ମଣିଷ ପୁଣି ସେମାନଙ୍କ ସହ ପ୍ରତିଯୋଗୀତା କରି ଆମେ ପଶୁପକ୍ଷୀମାନେ

କାହିଁକି ଆସିବାକୁ ସ୍ଥିର କଲୁ? ମୁଁ ଆଦୌ ବୁଝିପାରୁନି। ଏ ବିଶ୍ୱ ବ୍ରହ୍ମାଣ୍ଡରେ କୋଟି କୋଟି ଗ୍ରହ, ନକ୍ଷତ୍ର ଭରି ରହିଛି। ସେଗୁଡ଼ିକ ମଧ୍ୟରୁ ଯେ କୌଣସିଟିକୁ ଯାଇପାରିଥାନ୍ତୁ। ତାହା ଦ୍ୱାରା ବରଂ କିଛି ନା କିଛି ଲାଭ ହୋଇଥାଆନ୍ତା। ଅନ୍ୟ କେଉଁଠିକୁ ନହେଲେ ଆମେ ଅନ୍ତତଃ ସୂର୍ଯ୍ୟାଲୋକକୁ ଯାତ୍ରା କରିଥିଲେ ମଧ୍ୟ ଭଲ ହୋଇଥାଆନ୍ତା। ଚନ୍ଦ୍ରଠାରୁ ସୂର୍ଯ୍ୟ ନିଶ୍ଚୟ ଅଧିକ ଉଜ୍ଜ୍ୱଳ ଓ ବିରାଟ। ତେଣୁ ତାହା ମୋ ମତରେ ପରିଦର୍ଶନ ଯୋଗ୍ୟ।''

ମାଛର କଥା ଶୁଣି ପେଚା ମହାଶୟ ବୁଝାଇ କହିଲେ ''ଚନ୍ଦ୍ରକୁ ପ୍ରଥମେ ଆସିବାର ମୂଳ କାରଣ ହେଲା, ଏହା ପୃଥିବୀର ନିକଟତମ ସ୍ଥାନ। ମନୁଷ୍ୟର ପ୍ରକୃତି ହେଲା ଦିବାସ୍ୱପ୍ନ ଦେଖିବା। ସେ ନୂଆ ନୂଆ, ଅସାଧାରଣ ଓ ଅସାଧ କାର୍ଯ୍ୟଗୁଡ଼ିକରେ ବିଜୟୀ ହେବାର ସ୍ୱପ୍ନ ଦେଖେ ଓ ତାହାକୁ ବାସ୍ତବରେ ପରିଣତ କରିବାକୁ ପ୍ରୟାସ କରେ। ମନୁଷ୍ୟର ଏହି ମହାକାଶ ପର୍ଯ୍ୟବେକ୍ଷଣର ସ୍ୱପ୍ନ ସବୁ ଯୁଗରେ ତାହାର ଚିତ୍ରକଳା ଓ ରଚନା ମଧ୍ୟରେ ପରିସ୍ଫୁଟ ହୋଇ ଆସିଛି। ଯୁଲସ୍ ଭର୍ନ (Jules Verne) ଓ ଏଚ.ଜି. ୱେଲସ୍ (H.G. Wells) ନାମକ ଲେଖକମାନେ ସେମାନଙ୍କର ଏହି ମହାକାଶ ଭ୍ରମଣ, ଚନ୍ଦ୍ର ଯାତ୍ରା, ସମୟ ଯାତ୍ରା ଇତ୍ୟାଦି ପରିକଳ୍ପନାକୁ 'Journey to moon' (ଚନ୍ଦ୍ର ଯାତ୍ରା), ଓ 'Time Machine' (ସମୟ ଯାତ୍ରା) ପୁସ୍ତକ ମାଧ୍ୟମରେ ପ୍ରକାଶ କରିଥିଲେ। କିନ୍ତୁ ଏହା ପରବର୍ତ୍ତୀ ଯୁଗରେ ମାନବର ଏହି ପରିକଳ୍ପନା ବିଜ୍ଞାନରେ ପରିବର୍ତ୍ତିତ ହୋଇଥିଲା। ୧୯୦୩ ମସିହାରେ ଋଷିଆର ବୈଜ୍ଞାନିକ କନ୍‌ଷ୍ଟାଣ୍ଟିନ୍ ସେକୋଓ୍ୱସ୍କି (Konstantine Tsiolkosky) ତାଙ୍କର ଗବେଷଣାର ତଥ୍ୟ ପ୍ରକାଶ କରି, ମହାକାଶ ଭ୍ରମଣର ମୂଳଦୁଆ ପକାଇଥିଲେ। ସମସାମୟିକ ଭାବେ, ଆମେରିକାର ବୈଜ୍ଞାନିକ ରବର୍ଟ ଗୋଡାର୍ଡ (Robert Goddard) ସ୍ୱତନ୍ତ୍ର ଭାବେ, ରକେଟ୍ ସମ୍ବନ୍ଧୀୟ ଗବେଷଣା କରିଥିଲେ ଓ ଅବଶେଷରେ ୧୯୨୬ ମସିହାରେ ସେ ସର୍ବପ୍ରଥମେ ତାଙ୍କର କ୍ଷୁଦ୍ରକାୟ ତରଳ ଇନ୍ଧନ ଚାଳିତ ରକେଟ୍‌ଟି ମହାକାଶକୁ କ୍ଷେପଣ କରିଥିଲେ। ସେ ମହାକାଶ ଭ୍ରମଣର ବିକାଶ ଓ ସଫଳତା ଦିଗରେ ମୂଳଦୁଆ ସ୍ଥାପନ କରିଥିଲେ। ଏହା ପରବର୍ତ୍ତୀ ସମୟରେ ମାନବ ଚନ୍ଦ୍ରଯାତ୍ରା ଉଦ୍ୟମରେ, ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ପର୍ଯ୍ୟବେକ୍ଷଣ କରି ଓ ଚନ୍ଦ୍ରକୁ ରେଞ୍ଜର (Ranger), ଚନ୍ଦ୍ର ପରିକ୍ରମଣ (Moon Orbiter) ଓ ସରଭେୟର (Surveyor) ପ୍ରଭୃତି ଯନ୍ତ୍ରଚାଳିତ ଯାନଗୁଡ଼ିକ ପ୍ରେରଣ କରି ମହାକାଶ ଭ୍ରମଣ ଓ ଚନ୍ଦ୍ର ସମ୍ବନ୍ଧୀୟ ବହୁ ତଥ୍ୟ ସଂଗ୍ରହ କରିଥିଲେ। ସରଭେୟର୍ ଶୂନ୍ୟାକାଶ ଯାନଟିରେ ପ୍ରାୟ ୫୦୦ କିଲୋଗ୍ରାମ ଯନ୍ତ୍ରପାତି ଖଞ୍ଜି, ମାନବ ଚନ୍ଦ୍ରକୁ ପ୍ରେରଣ କରି, ଚନ୍ଦ୍ରର ଗଠନ, ମାଧ୍ୟାକର୍ଷଣ ଶକ୍ତି, ଓ ଜଳବାୟୁ ମଣ୍ଡଳ ଇତ୍ୟାଦି ଉପରେ, ବିଶେଷ ଜ୍ଞାନ ଅର୍ଜନ କରିପାରିଥିଲା। ସେହି ଜ୍ଞାନର ପ୍ରୟୋଗରେ ରକେଟ୍ ଯାନ ନିର୍ମାଣ କରି, ବ୍ୟୋମଚାରୀଙ୍କୁ ଶିକ୍ଷା ଦେଇ, ଚନ୍ଦ୍ର ଅଭିଯାନ ପାଇଁ ସକ୍ଷମ ହୋଇ ପାରିଲା। କିନ୍ତୁ ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହଗୁଡ଼ିକ ପୃଥିବୀଠାରୁ ବହୁ ଦୂରରେ ଅବସ୍ଥିତ। ସେଗୁଡ଼ିକୁ ଯାତ୍ରା କରିବାକୁ ଇଚ୍ଛା କଲେ ସେଗୁଡ଼ିକ ଉପରେ ବିଶେଷ ଜ୍ଞାନ ଅର୍ଜନ କରିବା ଦରକାର। ମନୁଷ୍ୟ ସେଥିପାଇଁ ଅବଶ୍ୟ ଉଦ୍ୟମ କରୁଛି କିନ୍ତୁ ତାହା ଫଳବତୀ ହେବାକୁ ସମୟ ଦରକାର। ମାନବ ଦିନେ ନା ଦିନେ ନିଶ୍ଚୟ ଏ କାର୍ଯ୍ୟରେ ସଫଳତା ଲାଭ କରିବ ବୋଲି ମୋର ଦୃଢ଼ ବିଶ୍ୱାସ।

''ଧୀରଜ, ସୂର୍ଯ୍ୟକୁ ଯାତ୍ରାକରିବା କଥା ଉଠାଇବାରୁ, ମୋର ଉଇଲିଅମ୍ ହୋସ୍‌ଚେଲ୍ (William Heschel) ନାମକ ଏକ ବୈଜ୍ଞାନିକଙ୍କ କଥା ମନେ ପଡ଼ିଗଲା। ସେ, ସୂର୍ଯ୍ୟଙ୍କଠାରୁ ସପ୍ତମ ସ୍ଥାନରେ

କାହିଁକି ଆସିବାକୁ ସ୍ଥିର କଲୁ? ମୁଁ ଆଦୌ ବୁଝିପାରୁନି। ଏ ବିଶ୍ୱ ବ୍ରହ୍ମାଣ୍ଡରେ କୋଟି କୋଟି ଗ୍ରହ, ନକ୍ଷତ୍ର ଭରି ରହିଛି। ସେଗୁଡ଼ିକ ମଧ୍ୟରୁ ଯେ କୌଣସିଟିକୁ ଯାଇପାରିଥାନ୍ତୁ। ତାହା ଦ୍ୱାରା ବରଂ କିଛି ନା କିଛି ଲାଭ ହୋଇଥାଆନ୍ତା। ଅନ୍ୟ କେଉଁଠିକୁ ନହେଲେ ଆମେ ଅନ୍ତତଃ ସୂର୍ଯ୍ୟାଲୋକକୁ ଯାତ୍ରା କରିଥିଲେ ମଧ୍ୟ ଭଲ ହୋଇଥାଆନ୍ତା। ଚନ୍ଦ୍ରଠାରୁ ସୂର୍ଯ୍ୟ ନିଶ୍ଚୟ ଅଧିକ ଉଜ୍ଜ୍ୱଳ ଓ ବିରାଟ। ତେଣୁ ତାହା ମୋ ମତରେ ପରିଦର୍ଶନ ଯୋଗ୍ୟ।''

ମାଛର କଥା ଶୁଣି ପେଚା ମହାଶୟ ବୁଝାଇ କହିଲେ ''ଚନ୍ଦ୍ରକୁ ପ୍ରଥମେ ଆସିବାର ମୂଳ କାରଣ ହେଲା, ଏହା ପୃଥିବୀର ନିକଟତମ ସ୍ଥାନ। ମନୁଷ୍ୟର ପ୍ରକୃତି ହେଲା ଦିବାସ୍ୱପ୍ନ ଦେଖିବା। ସେ ନୂଆ ନୂଆ, ଅସାଧାରଣ ଓ ଅସାଧ୍ୟ କାର୍ଯ୍ୟଗୁଡ଼ିକରେ ବିଜୟୀ ହେବାର ସ୍ୱପ୍ନ ଦେଖେ ଓ ତାହାକୁ ବାସ୍ତବରେ ପରିଣତ କରିବାକୁ ପ୍ରୟାସ କରେ। ମନୁଷ୍ୟର ଏହି ମହାକାଶ ପର୍ଯ୍ୟବେକ୍ଷଣର ସ୍ୱପ୍ନ ସବୁ ଯୁଗରେ ତାହାର ଚିତ୍ରକଳା ଓ ରଚନା ମଧ୍ୟରେ ପରିସ୍ଫୁଟ ହୋଇ ଆସିଛି। ଯୁଲସ୍ ଭର୍ନ (Jules Verne) ଓ ଏଚ.ଜି. ୱେଲସ୍ (H.G. Wells) ନାମକ ଲେଖକମାନେ ସେମାନଙ୍କର ଏହି ମହାକାଶ ଭ୍ରମଣ, ଚନ୍ଦ୍ର ଯାତ୍ରା, ସମୟ ଯାତ୍ରା ଇତ୍ୟାଦି ପରିକଳ୍ପନାକୁ 'Journey to moon' (ଚନ୍ଦ୍ର ଯାତ୍ରା), ଓ 'Time Machine' (ସମୟ ଯାତ୍ରା) ପୁସ୍ତକ ମାଧ୍ୟମରେ ପ୍ରକାଶ କରିଥିଲେ। କିନ୍ତୁ ଏହା ପରବର୍ତ୍ତୀ ଯୁଗରେ ମାନବର ଏହି ପରିକଳ୍ପନା ବିଜ୍ଞାନରେ ପରିବର୍ତ୍ତିତ ହୋଇଥିଲା। ୧୯୦୩ ମସିହାରେ ଋଷିଆର ବୈଜ୍ଞାନିକ କନ୍‌ଷ୍ଟାଣ୍ଟିନ୍ ସେକୋଓ୍ୱସ୍କି (Konstantine Tsiolkosky) ତାଙ୍କର ଗବେଷଣାର ତଥ୍ୟ ପ୍ରକାଶ କରି, ମହାକାଶ ଭ୍ରମଣର ମୂଳଦୁଆ ପକାଇଥିଲେ। ସମସାମୟିକ ଭାବେ, ଆମେରିକାର ବୈଜ୍ଞାନିକ ରବର୍ଟ ଗୋଡାର୍ଡ (Robert Goddard) ସ୍ୱତନ୍ତ୍ର ଭାବେ, ରକେଟ୍ ସମ୍ବନ୍ଧୀୟ ଗବେଷଣା କରିଥିଲେ ଓ ଅବଶେଷରେ ୧୯୨୬ ମସିହାରେ ସେ ସର୍ବପ୍ରଥମେ ତାଙ୍କର କ୍ଷୁଦ୍ରକାୟ ତରଳ ଇନ୍ଧନ ଚାଳିତ ରକେଟ୍‌ଟି ମହାକାଶକୁ କ୍ଷେପଣ କରିଥିଲେ। ସେ ମହାକାଶ ଭ୍ରମଣର ବିକାଶ ଓ ସଫଳତା ଦିଗରେ ମୂଳଦୁଆ ସ୍ଥାପନ କରିଥିଲେ। ଏହା ପରବର୍ତ୍ତୀ ସମୟରେ ମାନବ ଚନ୍ଦ୍ରଯାତ୍ରା ଉଦ୍ୟମରେ, ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ପର୍ଯ୍ୟବେକ୍ଷଣ କରି ଓ ଚନ୍ଦ୍ରକୁ ରେଞ୍ଜର (Ranger), ଚନ୍ଦ୍ର ପରିକ୍ରମଣ (Moon Orbiter) ଓ ସରଭେୟର (Surveyor) ପ୍ରଭୃତି ଯନ୍ତ୍ରଚାଳିତ ଯାନଗୁଡ଼ିକ ପ୍ରେରଣ କରି ମହାକାଶ ଭ୍ରମଣ ଓ ଚନ୍ଦ୍ର ସମ୍ବନ୍ଧୀୟ ବହୁ ତଥ୍ୟ ସଂଗ୍ରହ କରିଥିଲେ। ସରଭେୟର୍ ଶୂନ୍ୟାକାଶ ଯାନଟିରେ ପ୍ରାୟ ୫୦୦ କିଲୋଗ୍ରାମ ଯନ୍ତ୍ରପାତି ଖଞ୍ଜି, ମାନବ ଚନ୍ଦ୍ରକୁ ପ୍ରେରଣ କରି, ଚନ୍ଦ୍ରର ଗଠନ, ମାଧ୍ୟାକର୍ଷଣ ଶକ୍ତି, ଓ ଜଳବାୟୁ ମଣ୍ଡଳ ଇତ୍ୟାଦି ଉପରେ, ବିଶେଷ ଜ୍ଞାନ ଅର୍ଜନ କରିପାରିଥିଲା। ସେହି ଜ୍ଞାନର ପ୍ରୟୋଗରେ ରକେଟ୍ ଯାନ ନିର୍ମାଣ କରି, ବ୍ୟୋମଚାରୀଙ୍କୁ ଶିକ୍ଷା ଦେଇ, ଚନ୍ଦ୍ର ଅଭିଯାନ ପାଇଁ ସକ୍ଷମ ହୋଇ ପାରିଲା। କିନ୍ତୁ ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହଗୁଡ଼ିକ ପୃଥିବୀଠାରୁ ବହୁ ଦୂରରେ ଅବସ୍ଥିତ। ସେଗୁଡ଼ିକୁ ଯାତ୍ରା କରିବାକୁ ଇଚ୍ଛା କଲେ ସେଗୁଡ଼ିକ ଉପରେ ବିଶେଷ ଜ୍ଞାନ ଅର୍ଜନ କରିବା ଦରକାର। ମନୁଷ୍ୟ ସେଥିପାଇଁ ଅବଶ୍ୟ ଉଦ୍ୟମ କରୁଛି କିନ୍ତୁ ତାହା ଫଳବତୀ ହେବାକୁ ସମୟ ଦରକାର। ମାନବ ଦିନେ ନା ଦିନେ ନିଶ୍ଚୟ ଏ କାର୍ଯ୍ୟରେ ସଫଳତା ଲାଭ କରିବ ବୋଲି ମୋର ଦୃଢ଼ ବିଶ୍ୱାସ।

''ଧୀରଜ, ସୂର୍ଯ୍ୟକୁ ଯାତ୍ରାକରିବା କଥା ଉଠାଇବାରୁ, ମୋର ଉଇଲିଅମ୍ ହୋସ୍‌ଚେଲ୍ (William Heschel) ନାମକ ଏକ ବୈଜ୍ଞାନିକଙ୍କ କଥା ମନେ ପଡ଼ିଗଲା। ସେ, ସୂର୍ଯ୍ୟଙ୍କଠାରୁ ସପ୍ତମ ସ୍ଥାନରେ



ଚନ୍ଦ୍ରପୃଷ୍ଠର ମାଧ୍ୟାକର୍ଷଣ ଶକ୍ତି ପୃଥିବୀପୃଷ୍ଠ ଅପେକ୍ଷା ଛ ଗୁଣ କମ୍ (ପୃଷ୍ଠା ୪୯)



ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ (ପୃଷ୍ଠା ୬୮)

ଥିବା ଇଉରେନସ୍ ଗ୍ରହର ଆବିଷ୍କାରକ। ସେ ସୂର୍ଯ୍ୟଙ୍କର ଗଠନ ଓ ଅନ୍ତର୍ନିହିତ ଉପାଦାନ ଇତ୍ୟାଦି ବିଷୟରେ ଏକ ମୋଟାମୋଟି ଧାରଣା ଦେବାକୁ ଯାଇ ପ୍ରଥମ ଚେଷ୍ଟାରେ ଉଲ୍ଲେଖ କରିଥିଲେ ଯେ, ସୂର୍ଯ୍ୟ ଏକ ଅତ୍ୟୁଜ୍ଜ୍ୱଳ ଗ୍ରହ। ଏହାର ଚତୁର୍ଦ୍ଦିଗକୁ ମେଘମାଳା ଆଚ୍ଛାଦିତ କରି ରଖିଛି ଓ ସୂର୍ଯ୍ୟ ପୃଷ୍ଠରେ, ବହୁ ଜନପ୍ରାଣୀ ବସବାସ କରି ରହିଛନ୍ତି। କିନ୍ତୁ ପରେ ମାନବ, ଭୂପୃଷ୍ଠ ଓ ମହାକାଶରେ ସ୍ଥାପିତ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ପର୍ଯ୍ୟବେକ୍ଷଣ କରି ଜାଣିବାକୁ ପାଇଥିଲା ଯେ, ସୂର୍ଯ୍ୟ ଗ୍ରହ ନୁହେଁ। ଏହା ଏକ ନକ୍ଷତ୍ର। ଏହା ଏକ ଜ୍ୱଳନ୍ତ ବାଷ୍ପୀୟ ଅଗ୍ନି ପିଣ୍ଡୁଳା। ଏହା ଆମ୍ଭମାନଙ୍କୁ ଜଣାଥିବା, ଭୂପୃଷ୍ଠର ଯେ କୌଣସି ଉତ୍ତପ୍ତ ପଦାର୍ଥ (ଅଗ୍ନି ଇତ୍ୟାଦି) ଠାରୁ ମଧ୍ୟ ଅଧିକ ଉତ୍ତପ୍ତ। ସୂର୍ଯ୍ୟ ମୁଖ୍ୟତଃ ହାଇଡ୍ରୋଜେନ ଓ ହିଲିୟମ୍ ବାଷ୍ପ ଦ୍ୱାରା ଗଠିତ। ହାଇଡ୍ରୋଜେନ୍ ୯୦% ଓ ହିଲିୟମ୍ ୯%, ବାକୀ ୧%ରେ ଅମ୍ଳଜାନ, ନାଇଟ୍ରୋଜେନ, କାରବୋନ୍ ଓ ଲୁହା ଇତ୍ୟାଦି ଉପାଦାନ ମଧ୍ୟ ରହିଛି। ସୂର୍ଯ୍ୟର କେନ୍ଦ୍ରସ୍ଥଳୀରେ ହାଇଡ୍ରୋଜେନ୍ ହିଲିୟମକୁ ରୂପାନ୍ତରୀତ ହେବା ପ୍ରଣାଳୀକ୍ରମେ ଏହାର ଆଲୋକ ଓ ଉତ୍ତାପର ସୃଷ୍ଟି ହୋଇଥାଏ। ଏହି ପ୍ରଣାଳୀ ଫ୍ୟୁଜନ୍ (Fusion) ନାମରେ ପରିଚିତ। ଏହି ପ୍ରଣାଳୀ ଦ୍ୱାରା ହାଇଡ୍ରୋଜେନ୍ ବୋମାର ବିସ୍ଫୋରଣ କ୍ରିୟା ହୋଇଥାଏ।

''ସୂର୍ଯ୍ୟ ଆମର ସର୍ବ ନିକଟତମ ନକ୍ଷତ୍ର। ପୃଥିବୀଠାରୁ ଏହା ୯୩୦ ଲକ୍ଷ କିଲୋମିଟର ଦୂରରେ ଅବସ୍ଥିତ। ଆଲୋକ ବର୍ଷରେ ଗଣନା କଲେ, ସୂର୍ଯ୍ୟ ପୃଥିବୀଠାରୁ ୮ ଆଲୋକ ମିନିଟ୍ ଦୂରରେ ଅବସ୍ଥିତ। ଅର୍ଥାତ ସୂର୍ଯ୍ୟାଲୋକ ଭୂପୃଷ୍ଠ ସ୍ପର୍ଶ କରିବାକୁ ଆଠ ମିନିଟ୍ ଲାଗେ। ଆଲୋକର ବେଗ ସେକେଣ୍ଡକୁ ତିନିଶହ ହଜାର କିଲୋମିଟର (୩୦୦,୦୦୦ କିଲୋମିଟର)। ସୂର୍ଯ୍ୟଙ୍କର ଆକାର ବିରାଟ। ଆମ ସୌରଜଗତର ୯ଟି ଗ୍ରହ ପାଖାପାଖି ରଖିଲେ, ତାହାର ମିଳିତ ପରିସରଠାରୁ ମଧ୍ୟ, ସୂର୍ଯ୍ୟ ୬୦୦ଗୁଣ ବଡ଼। ସୂର୍ଯ୍ୟର ବ୍ୟାସ (Diameter) ୧୩୯୨,୦୦୦ କିଲୋମିଟର ଅଟେ।

''ସୂର୍ଯ୍ୟ, ଝଡ଼ ଝଞ୍ଜା ପୂର୍ଣ୍ଣ ଏକ ଅଗ୍ନିପିଣ୍ଡୁଳା। ସୂର୍ଯ୍ୟର ଅଭ୍ୟନ୍ତରରେ ଏକ ଶକ୍ତିଶାଳୀ ଚୁମ୍ବକ କ୍ଷେତ୍ର ଅବସ୍ଥିତ। ଏହି କ୍ଷେତ୍ରର ଗଠନ ଓ କ୍ରିୟାକଳାପ ଅତି ଜଟିଳ। ଏହି ଚୁମ୍ବକ କ୍ଷେତ୍ର ସୂର୍ଯ୍ୟଙ୍କର ଅଧିକାଂଶ ଆଗ୍ନେୟ କ୍ରିୟାକଳାପର ସୂତ୍ରଧର।

''ସୂର୍ଯ୍ୟଙ୍କୁ ପ୍ରଧାନତଃ ତିନୋଟି ସ୍ତରରେ ବିଭକ୍ତ କରାଯାଇଛି। ଏହାର ଉର୍ଦ୍ଧ୍ୱଭାଗରେ ଘେରି ରହିଥିବା ହାଲୁକା ବାୟୁମଣ୍ଡଳ, କରୋନା (Corona) ବା କ୍ରାଉନ (Crown) ବା ମୁକୁଟ ନାମରେ ପରିଚିତ। ଏହି ବାୟୁମଣ୍ଡଳ, ମହାକାଶରେ କୋଟି କୋଟି ମାଇଲ୍ ପର୍ଯ୍ୟନ୍ତ ବ୍ୟାପୀ ରହିଛି। ଏହାର ଉତ୍ତାପ ପ୍ରଚଣ୍ଡ। ଏହି ଉତ୍ତାପର ମାତ୍ରା ପ୍ରାୟ ଦୁଇ ମିଲିୟନ୍ କେଲଭିନ୍ (2000,000 kelvin)। ଏହି ବାୟୁମଣ୍ଡଳ, ଧୂଳି ଓ ବାଷ୍ପ ଦ୍ୱାରା ଗଠିତ। ଏହି କରୋନା (Corona)ରେ ଛିଦ୍ରଭଳି କେତେକ ସ୍ଥାନ ଅଛି, ଯାହା ପ୍ରକୃତ ପକ୍ଷେ, ଚୁମ୍ବକ ପ୍ରବାହିତ ନଳୀ ବା ରାସ୍ତା। ଏହାର ମୁଖଦ୍ୱାର ବାହ୍ୟ ଆକାଶକୁ ଉନ୍ମୁକ୍ତ ରହିଛି। ଦ୍ରୁତ ଗତଶୀଳ ଇଲେକ୍ଟ୍ରନ୍ (Electron) ଓ ପ୍ରୋଟନ୍ (Proton) କଣିକା ଏହି ନଳୀ ମଧ୍ୟ ଦେଇ ମହାଶୂନ୍ୟରେ, ସୌରବାୟୁ (Solar Wind) ରୂପେ ପ୍ରବାହିତ ହୁଏ। ସୂର୍ଯ୍ୟ ପରାଗ ସମୟରେ ଚନ୍ଦ୍ର ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରିବା ସମୟରେ ଏହି ଭାଗ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଶୁଭ୍ର ଜ୍ୟୋତି ବଳୟ ସଦୃଶ ଦେଖାଯାଏ।

''କରୋନାର ନିମ୍ନସ୍ତର କ୍ରୋମୋସ୍ଫିୟର (Chromosphere) ବା ରଙ୍ଗମଣ୍ଡଳ ନାମରେ ପରିଚିତ। ସୂର୍ଯ୍ୟଙ୍କର ବହିର୍ଭାଗର ବାୟୁମଣ୍ଡଳ ଅପେକ୍ଷା ଏହା ଘନ। ସୂର୍ଯ୍ୟଙ୍କ ପୂର୍ଣ୍ଣ ପରାଗ ସମୟରେ ଚନ୍ଦ୍ରଙ୍କ

ଦ୍ୱାରା ଆଚ୍ଛାଦିତ ସୂର୍ଯ୍ୟଙ୍କର ଚତୁର୍ଦ୍ଦିଗରେ ଏହା ଏକ ଲୋହିତ ବର୍ଣ୍ଣର ସରୁ ବଳୟ ସଦୃଶ୍ୟ ପ୍ରତୀୟମାନ ହୁଏ। ଏହି ଭାଗରୁ, ଜିହ୍ୱା ସଦୃଶ ଅସଂଖ୍ୟ, ବିରାଟ ବିରାଟ ଜ୍ୱଳନ୍ତ ଆଗ୍ନେୟ ଶିଖାମାନ ସୂର୍ଯ୍ୟଙ୍କର ବର୍ହିଭାଗକୁ ଲମ୍ବିଥାଏ। ଏଗୁଡ଼ିକୁ ସ୍ପାଇକେଲ୍ (Spikles) କହିଥାଆନ୍ତି। ପ୍ରତ୍ୟେକ ସ୍ପାଇକଲସ୍ ପ୍ରାୟ ୭୦୦୦ କିଲୋମିଟର ଲମ୍ବା ଓ ୭୦୦ କିଲୋମିଟର ଚଉଡ଼ା ହୋଇଥାଏ। ଏହି ରଙ୍ଗମଣ୍ଡଳ ମୂଖ୍ୟତଃ ସ୍ପାଇକଲସ୍ ଦ୍ୱାରାହିଁ ଗଠିତ ହୋଇଥାଏ।

''ଏହି ରଙ୍ଗମଣ୍ଡଳର ନିମ୍ନଭାଗ, ଫୋଟୋସ୍ପିୟର (Photosphere)ବା ଆଲୋକମଣ୍ଡଳ ନାମରେ ପରିଚିତ। ଏହି ଆଲୋକ ଭାଗଟିକୁ ଆମେ ଭୂପୃଷ୍ଠରୁ ଖାଲି ଆଖିରେ ଦେଖିବାକୁ ପାଉ। ମହାକାଶରେ ସ୍ଥାପିତ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଦେଖିଲେ ଏହି ଆଲୋକମଣ୍ଡଳ ଚାଉଳ ଭଳି, ଦାନା ଦାନା ହୋଇ ଦେଖାଯାଏ। ଦାନାମୟ ପୃଷ୍ଠଟି ଅତି ଉତପ୍ତ ଓ ତାହା ସଦାବେଳେ ଟକ୍‌ମକ୍ ହୋଇ ଫୁଟୁଥାଏ। ଏହି ପୃଷ୍ଠରେ, କାଳି ଦାଗ ଭଳି ବହୁ ସଂଖ୍ୟକ ସୌରକଳଙ୍କ ବା ସୂର୍ଯ୍ୟ ଦାଗ (Sun spot) ଗୁଡ଼ିଏ ସୃଷ୍ଟି ହୋଇଥାଏ। ଏହି କଳା ଚିହ୍ନଗୁଡ଼ିକ ଯୋଡ଼ା ଯୋଡ଼ା କିମ୍ବା ଗୁଚ୍ଛ ଗୁଚ୍ଛ ହୋଇ ଉତ୍ପତ୍ତି ହୋଇଥାଏ। ଏକ, ଏକ କ୍ଷୁଦ୍ରକାୟ କଳା ଦାଗର ପରିସର ଆମ ପୃଥିବୀର ଆକାର ସହ ସମାନ। ସୂର୍ଯ୍ୟଦାଗ କୃଷ୍ଣବର୍ଣ୍ଣ ହେବାର କାରଣ, ଏହା ସୂର୍ଯ୍ୟପୃଷ୍ଠର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଶୀତଳତର। ସୂର୍ଯ୍ୟଦାଗର ଉତ୍ପତ୍ତି ଓ ଅର୍ନ୍ତଦ୍ଧ୍ୟାନ ୧୧ ବର୍ଷ ସମୟ ଚକ୍ର ଅନୁସରଣ କରିଥାଏ। ଏହି କଳା ଦାଗ ସାଢେ ପାଞ୍ଚ ବର୍ଷ ମଧ୍ୟରେ କମ୍ ସଂଖ୍ୟାରେ ସୃଷ୍ଟି ହୋଇ ପର ସାଢେ ପାଞ୍ଚ ବର୍ଷ ମଧ୍ୟରେ ସଂଖ୍ୟାବହୁଳ ହୋଇ ଉଠିଥାଏ। ସୂର୍ଯ୍ୟଙ୍କର ଏହି ତିନୋଟି ସ୍ତରର ଅନ୍ତର୍ଦ୍ଦେଶ ବା କେନ୍ଦ୍ରରେ ଅଗଣିତ ପ୍ରୋଟନ୍ କଣିକା ଅତି ସାନ୍ଦ୍ର ଭାବେ ଭରି ରହିଛି। ଫଳରେ, କଣିକା ଗୁଡ଼ିକ ପରସ୍ପର ସହିତ ସଂଘର୍ଷିତ ହୋଇ ଆଲୋକ ଓ ଉତ୍ତାପ ସୃଷ୍ଟି କରି ଥାଆନ୍ତି। ସୂର୍ଯ୍ୟ କେନ୍ଦ୍ରସ୍ଥଳୀର ଉତ୍ତାପର ମାତ୍ରା ୧୫୦ ଲକ୍ଷ କେଲ୍‌ଭିନ୍ (150,00,000kelvin)। ଏହାର ଘନ କେନ୍ଦ୍ରସ୍ଥଳୀରୁ ଆଲୋକ ଓ ଉତ୍ତାପ (Energy) ବହିର୍ଗତ ହୋଇ, ସୂର୍ଯ୍ୟପୃଷ୍ଠରେ ପହଞ୍ଚିବା ପାଇଁ କୋଟି କୋଟି ବର୍ଷ ଲାଗିଥାଏ। ଅଥଚ ସୂର୍ଯ୍ୟାଲୋକ ଭୂପୃଷ୍ଠରେ ପହଞ୍ଚିବାକୁ ମାତ୍ର ଆଠ ମିନିଟ୍ ଲାଗିଥାଏ।

''ସୂର୍ଯ୍ୟ ପୃଷ୍ଠରେ ବହୁ ଆଗ୍ନେୟ ବିସ୍ଫୋରଣ ଘଟିଥାଏ। ସେଗୁଡ଼ିକ ମଧ୍ୟରେ ଫ୍ଲେଆର (Flare) ବିସ୍ଫୋରଣ ଓ ପ୍ରୋମିନେନ୍ସ (Prominence) ବିସ୍ଫୋରଣ ପ୍ରସିଦ୍ଧ। ସୂର୍ଯ୍ୟପୃଷ୍ଠରେ, ସୂର୍ଯ୍ୟ ଦାଗ ଘଟୁଥିବା (Sun spot activity) ସମୟରେ, ଏହି ବିସ୍ଫୋରଣ ଗୁଡ଼ିକର ସଂଖ୍ୟା ବହୁଳ ହୋଇଥାଏ। ଫ୍ଲେୟାର ବିସ୍ଫୋରଣ ଗୁଡ଼ିକ ଆମ ସୌର ଜଗତର ସର୍ବ ବୃହତ୍ତମ ବିସ୍ଫୋରଣ। ପ୍ରତି ଫ୍ଲେୟାର ବିସ୍ଫୋରଣର ଶକ୍ତି ଶହେ ଲକ୍ଷ (୧୦୦,୦୦,୦୦୦) ବା ୧ କୋଟି ଆଟମ୍ ବମ୍‌ର ଶକ୍ତି ସହ ସମାନ। ଏହି ବିସ୍ଫୋରଣ ଆଲୋକ ମଣ୍ଡଳର ସୂର୍ଯ୍ୟଦାଗ ନିକଟରେ ସୃଷ୍ଟି ଓ ବିସ୍ଫୋରିତ ହୋଇ ରଙ୍ଗମଣ୍ଡଳକୁ ଆଲୋକିତ କରି, ଶୂନ୍ୟାକାଶରେ ଲକ୍ଷ ଲକ୍ଷ କିଲୋମିଟର ପର୍ଯ୍ୟନ୍ତ ଲେଲିହାନ ଶିଖା ବିସ୍ତାର କରି, କିଛି ସମୟ ସ୍ଥାୟୀ ହୁଏ। ଏପରି ବିସ୍ଫୋରଣ ସମୟରେ ଅକଳନ ତେଜସ୍କ୍ରିୟ ଅଣୁ ପରମାଣୁ, ମହାଶୂନ୍ୟରେ କୋଟି କୋଟି କିଲୋମିଟର ପର୍ଯ୍ୟନ୍ତ ବିକ୍ଷିପ୍ତ ହୋଇ ବ୍ୟାପୀ ଯାଏ। ଏହି ତେଜସ୍କ୍ରିୟ କଣିକାଗୁଡ଼ିକ ପ୍ରାୟ ଅଲଟ୍ରାଭାଓଲେଟ୍ (Ultra violet) ଓ ଏକ୍ସରେ (X-ray) ରୂପେ ବହିର୍ଗତ ହୋଇଥାଏ।

''ସୂର୍ଯ୍ୟପୃଷ୍ଠରେ ଅନ୍ୟ ଏକ ବାଷ୍ପୀୟ ବିସ୍ଫୋରଣ ହୁଏ, ଯାହା ପ୍ରୋମିନେନ୍ସ ବିସ୍ଫୋରଣ ନାମରେ ଖ୍ୟାତ। ଏହି ବିସ୍ଫୋରଣ ସୂର୍ଯ୍ୟଙ୍କର ରଙ୍ଗମଣ୍ଡଳ (photosphere) ରେ ସୃଷ୍ଟି ହୋଇ କରୋନା ମଧ୍ୟ ଦେଇ ବିସ୍ଫୋରିତ ହେବା ଦ୍ୱାରା ଏହାର ଜ୍ୱଳନ୍ତ ବାଷ୍ପୀୟ ଶିଖାମାନ ମହାକାଶରେ ଲକ୍ଷ ଲକ୍ଷ କିଲୋମିଟର ପର୍ଯ୍ୟନ୍ତ ଉତ୍ତୋଳିତ ହୋଇ ଅର୍ଦ୍ଧବଳୟାକାରରେ ପୂନର୍ବାର ସୂର୍ଯ୍ୟପୃଷ୍ଠକୁ ଓହ୍ଲାଇ ଆସିଥାଏ। ଏହି ଉତ୍ତୋଳିତ ଅର୍ଦ୍ଧବଳୟାକାର ଆଗ୍ନେୟଶିଖା ସୂର୍ଯ୍ୟଙ୍କ ଚୁମ୍ବକୀୟ ଶକ୍ତିର ପ୍ରଭାବରେ ସେପରି ଅବସ୍ଥାରେ ମାସ ମାସ ଧରି ମହାଶୂନ୍ୟରେ ଝୁଲି ରହିଥାଏ।

'' ସୂର୍ଯ୍ୟପୃଷ୍ଠରୁ ଫ୍ଲେୟାର୍ ବିସ୍ଫୋରଣ ସମୟରେ ଅଗଣନ ତେଜସ୍କ୍ରିୟ କଣିକା ମହାକାଶରେ ବ୍ୟାପ୍ତ ହୋଇ ପୃଥିବୀପୃଷ୍ଠ ସ୍ପର୍ଶ କରିଥାଏ। ପୃଥିବୀର ଉର୍ଦ୍ଧ୍ୱଭାଗରେ ବଳୟାକାରରେ ଘେରି ରହିଥିବା ଦୁଇଟି ଚୁମ୍ବକୀୟ କ୍ଷେତ୍ର (Magnetic field) ଏ କଣିକାଗୁଡ଼ିକୁ ଆକୃଷ୍ଟ କରି ବନ୍ଦୀ କରିଥାଏ। ଏହି ଦୁଇଟି ବଳୟାକାର କ୍ଷେତ୍ର, ଭାନ୍ ଆଲେନ୍ ବେଲ୍ଟ (Van Allen Belt) ନାମରେ ପରିଚିତ। କାରଣ, ଭ୍ୟାନ୍ ଆଲେନ୍ ନାମକ ଏକ ସୁପ୍ରସିଦ୍ଧ ବୈଜ୍ଞାନିକ ଏହି କ୍ଷେତ୍ର ଦୁଇଟିକୁ ଆବିଷ୍କାର କରିଥିଲେ। ଏହି ଦୁଇ କ୍ଷେତ୍ରରେ ରେଡିଏସନ୍ (Radiation)ର ମାତ୍ରା ବହୁତ ବେଶୀ। ସୂର୍ଯ୍ୟପୃଷ୍ଠରୁ ବହିର୍ଗତ ଏହି ତେଜସ୍କ୍ରିୟ କଣିକାଗୁଡିକ ପୃଥିବୀର ଦୁଇ ମେରୁଅଞ୍ଚଳ ମଧ୍ୟ ଦେଇ ପ୍ରବେଶ କରନ୍ତେ, ଏହାର ସଂସ୍ପର୍ଶରେ ଆସି ମେରୁ ଉର୍ଦ୍ଧ୍ୱସ୍ଥ ବାୟୁମଣ୍ଡଳ ଉତ୍ତେଜିତ (Excited) ହୋଇଉଠିବା ଦ୍ୱାରା, ଭୂପୃଷ୍ଠର ରେଡ଼ିଓ ଓ ଟେଲିଭିଜନ ଯୋଗାଯୋଗରେ ବାଧା ସୃଷ୍ଟି ହୁଏ। କିନ୍ତୁ ଦୁଇ ମେରୁ ଅଞ୍ଚଳର ଆକାଶପଟରେ ଏହା ରଂଗୀନ୍ ଆଲୋକର ପ୍ରଦର୍ଶନୀ ସୃଷ୍ଟି କରିଥାଏ। ଏହା ମେରୁ ଆଲୋକ ବା ଅରୋରା (Aurora) ନାମରେ ପ୍ରଖ୍ୟାତ। ଦୁଇ ମେରୁ ଅଞ୍ଚଳରେ ଏହା ଉତ୍ତରମେରୁ ଆଲୋକ (Northern light) ଓ ଦକ୍ଷୀଣ ମେରୁ ଆଲୋକ (Southern light) ନାମରେ ପ୍ରସିଦ୍ଧ। ଏହି ଅରୋରା ବିଭିନ୍ନ ଆକୃତି ଓ ବର୍ଣ୍ଣ ଧାରଣ କରି ପ୍ରକଟିତ ହୋଇଥାଏ। ମୁଁ ସ୍ୱଚକ୍ଷୁରେ ଦେଖିଥିବା ଏକ ରୂପ ବର୍ଣ୍ଣନା କରି ଶୁଣାଉଛି। ମେରୁ ଆକାଶରେ, ସଂଧ୍ୟା ପରେ, ଏକ କ୍ଷୀଣ ଆଲୋକର ଶିଖା ଦୃଷ୍ଟିଗୋଚର ହେଲା। ଏହି ଆଲୋକ ଶିଖା କ୍ରମେ ଉଦ୍ଦୀପ୍ତ ହୋଇ ଉଠି ଧନୁ ଆକାର ଧାରଣ କଲା। ବିଭିନ୍ନ ରଂଗର ଆଲୋକ, ଧନୁ ଉପରୁ ଉର୍ଦ୍ଧଭାଗକୁ ପ୍ରସାରିତ ହୋଇ, ଅର୍ଦ୍ଧ ଗୋଲାକାର ବିଞ୍ଚଣାର ଆକୃତି ଧାରଣ କଲା। କ୍ରମେ ଏହି ଆକୃତି ପରିବର୍ତ୍ତିତ ହୋଇ ଦୋଳାୟମାନ ପର୍ଦ୍ଦା ସଦୃଶ ସମଗ୍ର ମେରୁ ଆକାଶକୁ ପରିପୂର୍ଣ୍ଣ କରିଦେଲା। ଜୀବନରେ ଥରେ ଏ ଦୃଶ୍ୟ ଦେଖିଲେ ଭୁଲି ହେବ ନାହିଁ।

''ସୂର୍ଯ୍ୟଙ୍କ ଆଲୋକ ଓ ଉତ୍ତାପ, ପୃଥିବୀର ଜୀବ ଓ ଉଦ୍ଭିଦ ଜଗତର ପ୍ରାଣଦାତା। କିନ୍ତୁ ସୂର୍ଯ୍ୟରୁ ବହିର୍ଗତ ଅନ୍ୟାନ୍ୟ ରଶ୍ମି ଯଥା ଏକ୍ସ ରେ (X-Ray) , ଗାମା ରେ (Gama-Ray) ଅଲଟ୍ରା ଭାଓଲେଟ୍ ରେ (Ultra Violet Ray) ପ୍ରାଣୀ ଜଗତ ପାଇଁ କ୍ଷତିକାରକ। ସୂର୍ଯ୍ୟଙ୍କର ଅନ୍ତର୍ଭାଗ ଓ ବହିର୍ଭାଗର ଉତ୍ତାପର ମାତ୍ରା ଏତେ ପ୍ରଚଣ୍ଡ ଯେ, ସୂର୍ଯ୍ୟକୁ ଯାତ୍ରା କରିବାର ପ୍ରସ୍ତାବ, ଆତ୍ମହତ୍ୟା ଅଭିଯାନରେ ପରିଣତ ହେବ। ସୂର୍ଯ୍ୟକୁ ଯିବା ତ ଦୂରର କଥା ତାର ପାଖାପାଖି ଅଞ୍ଚଳକୁ ଗଲେ ମଧ୍ୟ ଆମେ ସମସ୍ତେ ଭସ୍ମାକାର ଧାରଣ କରିବା'' ପେଚା ମହାଶୟ ଥଟ୍ଟାଳିଆ ସ୍ୱରରେ କହିଲେ ''ବର୍ତ୍ତମାନ ଆସ, ଖାଇ ସାରି ଯାନ ମଧ୍ୟରେ ବିଶ୍ରାମ କରିବା।''

ପେଚା ମହାଶୟଙ୍କ କଥା ସମସ୍ତେ ମନଧ୍ୟାନ ଦେଇ ଶୁଣୁଥିଲେ। ସେ ବିଶ୍ରାମ କରିବା

କଥା କହିବାମାତ୍ରେ, ଠେକୁଆ ଆରମ୍ଭ କଲା -- ''ଜ୍ଞାନୀ ମହାଶୟ, ସୂର୍ଯ୍ୟ ଅସ୍ତ ହୋଇ ନାହାନ୍ତି, ଅନ୍ଧାର ମଧ ହୋଇନାହିଁ, ଏପରି ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ବିଶ୍ରାମ କରିବାକୁ କାହିଁକି କହୁଛନ୍ତି ?''

''ଆରେ ଚନ୍ଦ୍ରରେ ପୃଥିବୀ ଭଳି ୧୨ ଘଣ୍ଟା ଦିବାଲୋକ ଓ ୧୨ ଘଣ୍ଟା ରାତ୍ରିକାଳ ନୁହେଁ। ଏଠି ସୂର୍ଯ୍ୟାଲୋକ ୧୪ ଦିନ ପର୍ଯ୍ୟନ୍ତ ଲାଗି ରହେ। ଅର୍ଥାତ୍ ଏଠି ଦିବସର ସ୍ଥାୟୀତ୍ୱ ୧୪ ଦିନ, ଓ ରାତ୍ରିର ସ୍ଥାୟୀତ୍ୱ ୧୪ ଦିନ ଲମ୍ୱା। କାରଣ, ପୃଥିବୀ ତା'ର କକ୍ଷ ଚତୁର୍ଦ୍ଦିଗରେ ୨୪ ଘଣ୍ଟାରେ ଥରେ ବୁଲି ଆସେ। କିନ୍ତୁ ଚନ୍ଦ୍ର ତାର କକ୍ଷ ଚତୁର୍ଦ୍ଦିଗରେ ଘୂରି ଆସିବାକୁ ୨୮ ଦିନ ଲାଗେ। ଚନ୍ଦ୍ରର ପରିକ୍ରମଣର ଗତି ଅତି ଶିଥିଳ। ତେଣୁ, ତୁମେମାନେ ବିଶ୍ରାମ କରିବାକୁ ଏଠି ରାତି ହେବା ପର୍ଯ୍ୟନ୍ତ ଯଦି ଅପେକ୍ଷା କରିବାକୁ ଚାହୁଁଛ, ତେବେ ୧୪ ଦିନ ଅପେକ୍ଷା କରି ବସ। ମୁଁ ଯାଉଛି ବିଶ୍ରାମ କରିବି।'' ଏପରି କହି ପେଚାମହାଶୟ ଯାନ ଉଦ୍ଦେଶ୍ୟରେ ପ୍ରସ୍ଥାନ କଲେ।

ମାଛ, କାଉ ଓ ଠେକୁଆ, ପେଚାମହାଶୟଙ୍କ ଚନ୍ଦ୍ରର ଦିନ ଓ ରାତିର ବିବରଣୀ ଶୁଣି ଆଶ୍ଚର୍ଯ୍ୟ ହେଲେ। ''୧୪ ଦିନ ଦିନବେଳ ପୁଣି ୧୪ ଦିନ ରାତି !!'' ପଶୁପକ୍ଷୀମାନେ ଜଣକ ପରେ ଜଣେ ଘୋଷି ହେଲା ପରି କହିଚାଲିଲେ-- ''ଆରେ ବାପରେ !!.....'' କାଉ କହି ଉଠିଲା ''ମୋର ୧୪ ଦିନ ଅନିଦ୍ରା ହୋଇ ବସି ରହିବାର ଶକ୍ତି ନାହିଁ। ମୁଁ ଯାଉଛି ଶୋଇବି''। କାଉ ଯାନ ଉଦ୍ଦେଶ୍ୟରେ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଲା।

''ଚାଲ ସୁବୋଧ ଭାଇ ଆମେ ମଧ ତୁମ ସହିତ ବିଶ୍ରାମ ନେବୁ'' ଠେକୁଆ ଏପରି କହି କାଉକୁ ଅନୁସରଣ କଲା। ମାଛ ମଧ ତା'ର ସାଥି ଦୁଇଙ୍କ ସହ ଯାନ ମଧକୁ ପ୍ରବେଶ କଲା।.....ସମସ୍ତେ ଖାଇ ସାରି ଗାଢ଼ ନିଦରେ ଶୋଇ ପଡ଼ିଲେ।

# ଅଷ୍ଟମ ପରିଚ୍ଛେଦ

କିଛି ସମୟ ପରେ କାଉର ନିଦ ଭାଂଗିଲା। ଦେଖିଲା ସମସ୍ତେ ନିଘୋଡ଼ ନିଦରେ ଶୋଇ ରହିଛନ୍ତି। ହଠାତ୍ ତାର ଦୃଷ୍ଟି ଠେକୁଆ ଶୋଇଥିବା ଜାଗାରେ ପଡ଼ିଲା। ''ଏଁ...... ଏ କଣ ? ଶ୍ୱେତାଙ୍ଗ ଭାଇ ଗଲେ କୁଆଡ଼େ ?'' କାଉ ଚମକି ଉଠିଲା। ଆଖି ଦୁଇଟିକୁ ମଳି ନିଦ ଛଡ଼ାଇ, ପୁଣି ସେ ଜାଗାକୁ ଚାହିଁଲା। ଜାଗାଟି ଶୂନ୍ୟ। ଠେକୁଆ ସେଠି ନଥିଲା। ଆତଙ୍କିତ ହୋଇ ଉଠି ପେଚାମହାଶୟ ଓ ମାଛକୁ ନିଦରୁ ଉଠାଇ ଦେଲା। ଠେକୁଆର ଅନ୍ତର୍ଦ୍ଧାନରେ ସମସ୍ତେ ବ୍ୟସ୍ତ ହୋଇ ପଡ଼ି ଯାନଟିର ପ୍ରତି କୋଣ ତନତନ କରି ଖୋଜି ଦେଖିଲେ; କିନ୍ତୁ ଠେକୁଆର ସଂଧାନ ପାଇଲେ ନାହିଁ।

ମାଛ ଭୟଭୀତ ହୋଇ ଧୀର ସ୍ୱରରେ କହିବାକୁ ଲାଗିଲା। ''ତୁମେମାନେ ଯିଏ ଯାହା କୁହ ମୁଁ କିନ୍ତୁ ଏ ଚନ୍ଦ୍ରପୃଷ୍ଠରେ ପାଦ ପକାଇଲା ବେଳୁ, ଏ ଜାଗା ମତେ ଏକ ଭୌତିକ ସ୍ଥାନ ଅର୍ଥାତ ଭୂତ ପ୍ରେତଙ୍କ ଚାରଣଭୂମି ଭଳି ମନେ ହେଲା। ଏ ଜାଗା ମୋ ମତରେ ଆଦୌ ଭଲ ନୁହେଁ। ଏଡ଼େ ବିରାଟ, ବିସ୍ତୃତ ଜାଗା !! ତା ଉପରେ ଖାଲି ଗୋଡ଼ି, ପଥର ଓ ବାଲି ଜମା ହୋଇଛିନା ? ଉହୁଁ.....ମୋର ତ ବିଶ୍ୱାସ ହେଉନି.....ମୋ ମତରେ, ଦିନେ ଏ ଜାଗା ଆମ ପୃଥିବୀ

ଭଳି ଗଛଲତା, ଫୁଲ ଫଳରେ ଭରି ରହିଥିଲା । ଚନ୍ଦ୍ରର ଏ ଛୋଟ ବଡ଼ ଗାତଗୁଡ଼ିକରେ କାଚ କେନ୍ଦୁଭଳି ନିର୍ମଳ ପାଣି ଉଛୁଳୁଥିଲା । ଆମ ପୃଥିବୀ ଭଳି ଏଠି ଜୀବଜନ୍ତୁ, ଜନପ୍ରାଣୀ ବସବାସ କରି ରହିଥିଲେ । ମୋଟ ଉପରେ, ଏ ଚନ୍ଦ୍ରଭୂମି ପୂର୍ବେ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଭୂମି ଥିଲା । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ସର୍ବଗ୍ରାସୀ ଜୀବ କିମ୍ବା ଦାନବ, ଏ ଚନ୍ଦ୍ରଭୂମିରେ ପାଦ ପକାଇଲା କି ଜନ୍ମଲାଭ କଲା, ତାହା ଭଗବାନଙ୍କୁ ଜଣା । କିନ୍ତୁ ସେହିକ୍ଷଣରୁ ଚନ୍ଦ୍ରପୃଷ୍ଠର ରୂପରେଖ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ସେମାନେ, ଏ ଭୂଇଁରେ ଗଛପତ୍ର, ଫୁଲଫଳ, ନିରୀହ ଜନ ପ୍ରାଣୀ, ସମସ୍ତଙ୍କୁ ଖାଇ, ପୋଖରୀ ଗଡିଆର ପାଣି ଶେଷ କରି, ସମସ୍ତ ପଦାର୍ଥ ନଷ୍ଟ ଭ୍ରଷ୍ଟ କରି ପଥର ଓ ବାଲିକୁଦରେ  ପରିଣତ କରିଦେଲେ । ବର୍ତ୍ତମାନ ସେମାନେ ଚନ୍ଦ୍ରର ଗାତ ଭିତରେ ଏଠି ସେଠି ଲୁଚି ବସିଛନ୍ତି । ଆମରି ଭଳି, ଅନ୍ୟାନ୍ୟ ଗ୍ରହ, ଉପଗ୍ରହର ଜୀବଜନ୍ତୁ ଏଠି ପାଦ ପକାଇଲେ, ସେମାନଙ୍କୁ ଶିକାର କରି ନିଜର କ୍ଷୁଧା ମେଣ୍ଟାଇବେ । ଆମ ଶ୍ୱେତାଙ୍ଗ ଭାଇଙ୍କୁ ସେଇ ଚନ୍ଦ୍ରଦାନବ ମାନେ ହିଁ ହରଣଚାଳ କରି ନେଇଛନ୍ତି । ଆମ ଶ୍ୱେତାଙ୍ଗ ଭାଇ ସେମାନଙ୍କ ଦ୍ୱାରା ବନ୍ଦୀ ହୋଇ, କି ଯେ ଯମ ଯନ୍ତ୍ରଣା ଭୋଗ କରୁଥିବେ, ତାହା ପରମେଶ୍ୱରଙ୍କୁ ହିଁ ଜଣା । ହୁଏତ ଶ୍ୱେତାଙ୍ଗ ଭାଇ ବିକଳ ହୋଇ କାନ୍ଦୁଥିବେ । ସହାୟତା ପାଇଁ ଆମ୍ଭମାନଙ୍କର ନାମ ଧରି ଡାକୁଥିବେ । ହୁଏତ..... ହୁଏତ, ସେ ଆଉ ଜୀବିତ ନ ଥିବେ । ସେଇ ଦାନବ ଦଳଙ୍କ ଥାଳିରେ, ଠେକୁଆ ଝୋଳ ରୂପେ ପରସା ଯାଇ ସାରିଥିବେ କିମ୍ବା ସେମାନଙ୍କ ପେଟ ଭିତରେ ହଜମ ହୋଇ ସାରିବେଣି.....ଉଃ .....ମୁଁ ଆଉ କିଛି ଭାବିବାକୁ ଚାହୁଁନି..... ଶ୍ୱେତାଙ୍ଗ ଭାଇଙ୍କ ପରି ଆମର ପାଳି ମଧ୍ୟ ଆସିବ । ପ୍ରଭୁହେ.....କି ଦୁର୍ଦ୍ଦିନ ଆସିଲା'', ଏପରି କହିବା ସହ ମାଛ ବ୍ୟାକୁଳ ଭାବେ କାନ୍ଦି ଉଠିଲା । ମାଛ ସହ ଯୋଗ ଦେଇ କାଉ ମଧ୍ୟ ଶୋକାକୁଳ ହୋଇ ଉଠିଲା ।

''ବନ୍ଦ କର ଏ କାନ୍ଦ ।'' ପେଚା ମହାଶୟ ସାମାନ୍ୟ ବିରକ୍ତ ହୋଇ କହିଲେ । ''ଏପରି ଅଯଥା ଦୁଃଶ୍ଚିନ୍ତା କରି ପିଲାଙ୍କ ଭଳି କାନ୍ଦିବା, ତୁମ୍ଭ ଦୁହିଁଙ୍କୁ ଶୋଭା ପାଉନାହିଁ । ଶ୍ୱେତାଙ୍ଗର ସନ୍ଧାନ ପାଉନୁ, ତାର ଅର୍ଥ ନୁହେଁ ଯେ ସେ ଇହଲୋକ ତ୍ୟାଗ କରି ପରଲୋକରେ ପହଞ୍ଚି ଗଲାଣି । ଏ ଚନ୍ଦ୍ର ପୃଷ୍ଠରେ ଧୀରଜ କହିବା ଭଳି କୌଣସି ସର୍ବଭକ୍ଷୀ ଜୀବ ବା ଦାନବ ନାହାଁନ୍ତି । ଯଦି ସେପରି କୌଣସି ଜୀବ, ଆମ ଶ୍ୱେତାଙ୍ଗଙ୍କୁ ଖାଦ୍ୟ ଉଦ୍ଦେଶ୍ୟରେ ଉଠାଇ ନେଇଗଲା ତେବେ ସେ ଆମ୍ଭମାନଙ୍କୁ, ଅର୍ଥାତ୍ ତୁମ୍ଭ ଦୁହିଁଙ୍କୁ ଓ ମୋତେ କାହିଁକି ଛାଡି ଦେଇଗଲା ? ଆମ ସମସ୍ତଙ୍କୁ ନେଇଥିଲେ ତ ସେ ଜୀବମାନଙ୍କର ଖାଦ୍ୟର ପରିମାଣ ବେଶୀ ହୋଇଥାଆନ୍ତା । ଆଉ ସେମାନଙ୍କୁ ରକମ୍ ରକମ୍‌ର ଖାନା ମଧ୍ୟ ମିଳିଥାଆନ୍ତା । ଯଥା:- ମାଛ ଭଜା, କାଉ ସୁପ୍, ପେଚା ପତର ପୋଡା ଇତ୍ୟାଦି ।'' ପେଚା ମହାଶୟ ପଶୁପକ୍ଷୀମାନଙ୍କୁ ବୁଝାଇବା ସହ ଥଟ୍ଟାଳିଆ ସ୍ୱରରେ କହିଲେ । ମୋ ମତରେ ଶ୍ୱେତାଙ୍ଗ ବୋଧହୁଏ ଯାନ ବାହାରେ ଚନ୍ଦ୍ରର ଆଖପାଖର ଦୃଶ୍ୟ ଉପଭୋଗ କରିବାକୁ କିମ୍ବା ଦୌଡାଦୌଡି କରି ବ୍ୟାୟାମ କରିବାକୁ ଯାଇଛି । ତେଣୁ ତୁମ୍ଭେ ଦୁହେଁ ପୋଷାକ ପତ୍ର ପିନ୍ଧି ଶୀଘ୍ର ପ୍ରସ୍ତୁତ ହୋଇଯାଅ । ଆମେ ଯାନ ବାହାରକୁ ଯାଇ, ଶ୍ୱେତାଙ୍ଗର ଅନୁସନ୍ଧାନ କରିବା ।''

ପେଚାମହାଶୟଙ୍କ କଥା ଶୁଣି, କାଉ ଓ ମାଛ ଦୁଇଜଣ କାନ୍ଦିବା ବନ୍ଦ କରି, ପୋଷାକ ପତ୍ର ପିନ୍ଧି ଯାନ ବାହାରକୁ ଯିବାକୁ ପ୍ରସ୍ତୁତ ହୋଇଗଲେ । ପେଚାମହାଶୟ ମଧ୍ୟ ପ୍ରସ୍ତୁତ ହୋଇ, ସେମାନଙ୍କ ସହ ଯାନ ବାହାରକୁ ଓହ୍ଲାଇ ଆସିଲେ । ସମସ୍ତେ ଚତୁର୍ଦ୍ଦିଗରେ ଠେକୁଆକୁ ଖୋଜି

ବୁଲିଲେ । ଆଖପାଖ ଗାତଗୁଡିକ ନିକଟକୁ ଯାଇ, ସେଗୁଡିକ ଭିତରକୁ ଝୁଙ୍କି ପଡି ଦେଖିଲେ । ସେମାନଙ୍କର ଶିରାଭରଣ ମଧ୍ୟରେ ଖଞ୍ଜା ହୋଇଥିବା ରେଡିଓ ପ୍ରୟୋଗ କରି ଠେକୁଆର ନାମ ଧରି ବହୁବାର ଡାକିଲେ । ବଡ଼ ସାନ ପଥରଗୁଡିକର ଚତୁର୍ଦ୍ଦିଗରେ ଘୁରିବୁଲି ଖୋଜିଲେ । କିନ୍ତୁ ଠେକୁଆର ସଂଧାନ କୌଣସି ସ୍ଥାନରେ ପାଇ ନଥିଲେ । କିଛି ସମୟ ପରେ କାଉ ଓ ମାଛ ପେଚା ମହାଶୟଙ୍କ ନିକଟକୁ ଫେରି ଆସି, ଠେକୁଆର ଅନୁସନ୍ଧାନ ପାଇଁ ଆଉ କି ଉପାୟ କରିବେ ବୋଲି ପଚାରିଲେ । ହଠାତ୍ ସମସ୍ତଙ୍କର ଦୃଷ୍ଟି, ଦୂରରେ ଯାନ ଦିଗକୁ ଅଗ୍ରସର ହେଉଥିବା ଏକ ଚଳନ୍ତା ମୂର୍ତ୍ତି ଉପରେ ପଡିଲା ।

''ଜ୍ଞାନୀ ମହାଶୟ, ମହା ବିପଦ । ଯାନ ମଧ୍ୟକୁ ପଳାଇ ଚାଲନ୍ତୁ । ଦ୍ୱାର ବନ୍ଦ୍ କରି ଦେବା ।'' ମାଛ ଭୟାତୁର ହୋଇ କହି ପକାଇଲା, ''ଦୂରର ସେଇ ଗତିଶୀଳ ମୂର୍ତ୍ତିଟି ନିଶ୍ଚୟ ଏକ ଚନ୍ଦ୍ର ଜୀବ । ଆମ ଶ୍ୱେତାଙ୍ଗ ଭାଇଙ୍କୁ ଶେଷକରି ପୁନର୍ବାର ଫେରି ଆସିଛି ଆମ୍ଭମାନଙ୍କୁ ତାର ଖାଦ୍ୟ ସାମଗ୍ରୀ ରୂପେ ଧରି ନେବାକୁ''-- ମାଛ କଥା ଶେଷ କରି ଯାନ ମଧ୍ୟକୁ ଦୌଡି ପଳାଇ ଯିବାକୁ ପ୍ରୟାସ କଲା । କିନ୍ତୁ ପେଚା ମହାଶୟ ତାକୁ ଆଶ୍ୱାସନା ଦେଇ ଅଟକାଇ ରଖିଲେ । ଚଳନ୍ତା ମୂର୍ତ୍ତିଟି ନିକଟବର୍ତ୍ତୀ ହୋଇ ଆସିବାରୁ ମାଛ ହଠାତ୍ ଅତି ଖୁସିରେ ଚିତ୍କାର କରି ଉଠିଲା ।

''ଯେ ତ ଆମ ଶ୍ୱେତାଙ୍ଗ ଭାଇ !! ଧନ୍ୟ ମା ସାରଳା !! ଘଣ୍ଟ ଘୋଡାଇ ଆମ ଶ୍ୱେତାଙ୍ଗ ଭାଇଙ୍କୁ ଫେରାଇ ଆଣିଲୁ । ସେଥିପାଇଁ ତୁମକୁ କୋଟି କୋଟି ନମସ୍କାର । ମା ସାରଳା ଶ୍ୱେତାଙ୍ଗ ଭାଇଙ୍କୁ ସଂକଟରୁ ବଞ୍ଚାଇ ଥିବାରୁ, ତୁମ ପାଖରେ ମୁଁ ଚାରିଟା କଷି ଗାଜର ଭୋଗ ଲଗାଇବି ।''

ଠେକୁଆ ପାଖରେ ପହଞ୍ଚିବା ମାତ୍ରେ, ମାଛ ଓ କାଉ ତାକୁ ଖୁସିରେ ବେଢିଗଲେ । କିନ୍ତୁ ପେଚାମହାଶୟ ଖୁବ୍ ଗମ୍ଭୀର ହୋଇ ଆରମ୍ଭ କଲେ ।

''ଆମ୍ଭମାନଙ୍କୁ ନ ଜଣାଇ, ଯାନ ମଧ୍ୟରୁ ଏପରି ଚୁପ୍‌ଚାପ୍ ବାହାରି ଚାଲିଯିବା, ତୁମ ପକ୍ଷେ ଅନୁଚିତ ଓ ଅନ୍ୟାୟ କାର୍ଯ୍ୟ । ତୁମକୁ ନ ଦେଖି, ଆମେ ସମସ୍ତେ ଆତଙ୍କିତ ହୋଇ ଚତୁର୍ଦ୍ଦିଗରେ ଖୋଜି ବୁଲି କ୍ଳାନ୍ତ ହୋଇ ପଡିଲୁଣି ।''

ପେଚାମହାଶୟଙ୍କ କଥା ଶୁଣି ଠେକୁଆ ଖୁବ୍ ଲଜ୍ଜିତ ହୋଇ କହିଲା ''ଆପଣ ଓ ମୋ ସାଥି ଦୁଇଜଣଙ୍କୁ ମୋ ପାଇଁ ଏପରି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡିଥିବାରୁ ମୁଁ ପ୍ରକୃତରେ ଦୁଃଖିତ । ଆପଣ ସମସ୍ତେ ସେଥିପାଇଁ ମତେ କ୍ଷମା କରିବେ । ସମସ୍ତେ ଶୋଇଥିବା ସମୟରେ ମୁଁ ଯାନ ବାହାରକୁ ଯାଇ, ଗୋଟିଏ ଜରୁରୀ କାମ ଶେଷ କରି ଫେରି ଆସିବି ବୋଲି ଭାବିଥିଲି ଓ ଚେଷ୍ଟା ମଧ୍ୟ କରିଥିଲି । କିନ୍ତୁ ତାହା ସମ୍ଭବପର ହେଲା ନାହିଁ । ମୋ ଯିବାର ଉଦ୍ଦେଶ୍ୟ ମଧ୍ୟ ବ୍ୟର୍ଥ ଗଲା ।'' ଠେକୁଆର ସ୍ୱରରେ ବିଷାଦର ସୂଚନା ଥିଲା ।

''ବାହାରକୁ ଯିବାର ତୁମ ଉଦ୍ଦେଶ୍ୟ କଣ ଥିଲା, ଆମେ ମଧ୍ୟ ଜାଣିବାକୁ ଇଚ୍ଛା କରୁଛୁ । ଦୟା କରି କୁହ'' ପେଚା ମହାଶୟ ପଚାରିଲେ ।

''ଗଳ୍ପରେ ବର୍ଣ୍ଣିତ ମୋ ଭଳି ଏକ ଠେକୁଆ ଓ ଚନ୍ଦ୍ରଦେବଙ୍କ ସଂଧାନରେ ମୁଁ ଯାଇଥିଲି'' ଠେକୁଆ କହିଲା । ''ବହୁପୂର୍ବରୁ ସେମାନଙ୍କୁ ଦର୍ଶନ କରିବାର ଅଭିଳାଷ ମୋ ହୃଦୟରେ ରହିଥିଲା । ତେଣୁ ଚନ୍ଦ୍ରପୃଷ୍ଠରେ ମୁଁ ବହୁଦୂର ପର୍ଯ୍ୟନ୍ତ, ଚନ୍ଦ୍ରଦେବଙ୍କର, ମଣିମୁକ୍ତାଖଚିତ ଉଆସଟିକୁ ଖୋଜି ବୁଲିଲି । ଉଆସଟି ସଂଧାନ ପାଇଥିଲେ, ସେଠି ବାସ କରୁଥିବା ଠେକୁଆ ଓ ଚନ୍ଦ୍ରଦେବଙ୍କର ଦର୍ଶନ ମଧ୍ୟ

ମିଳିଥାଆନ୍ତା। କିନ୍ତୁ ଦୁର୍ଭାଗ୍ୟକୁ ଚନ୍ଦ୍ରଦେବଙ୍କ ଉଆସର ଚିହ୍ନବର୍ଣ୍ଣ ସୁଦ୍ଧା ପାଇଲି ନାହିଁ। ହୁଏତ ଚନ୍ଦ୍ରଦେବଙ୍କ ଉଆସ ଅତି ଦୂରରେ ଅବସ୍ଥିତ, ଯାହା ମୁଁ ପାଦରେ ଚାଲି ଯାଇ ଦେଖିବାକୁ ଅକ୍ଷମ। କିମ୍ବା ତାହା ଅଦୃଶ୍ୟ ହୋଇ ରହିଛି ଯାହା ଦର୍ଶନ କରିବା ପାଇଁ ଧର୍ମପୁସ୍ତକ ଅନୁଯାୟୀ ଦିବ୍ୟଚକ୍ଷୁ ଦରକାର ଓ ସେ ଦିବ୍ୟଦୃଷ୍ଟି ମୋର ନାହିଁ।''

ଠେକୁଆର କଥା ଶୁଣି, ପେଚା ମହାଶୟ ଖୁବ୍ ଜୋରରେ ହସି ଉଠିଲେ ଓ କହିଲେ --

''ତୁମେ ବ୍ୟୋମଚାରୀ ରୂପେ ଚନ୍ଦ୍ରପୃଷ୍ଠକୁ ଆସିଥିବା ସତ୍ତ୍ୱେ ଏ ସବୁ ଭିତ୍ତିହୀନ ଲୋକକଥା ଗୁଡ଼ିକରେ ଦୃଢ଼ ବିଶ୍ୱାସ ରଖିଛ ଜାଣି ମୁଁ ଆଶ୍ଚର୍ଯ୍ୟ ହେଉଛି। ଏହାଛଡ଼ା ଚନ୍ଦ୍ରକୁ ଆସି, ଚନ୍ଦ୍ରପୃଷ୍ଠଟି ଜଳ, ବାୟୁ, ବୃକ୍ଷଲତା, ଜୀବଜନ୍ତୁଶୂନ୍ୟ ଜଗତ ବୋଲି ଜାଣିବା ସତ୍ତ୍ୱେ, ତୁମେ ଗଳ୍ପର ବର୍ଣ୍ଣିତ ଠେକୁଆ ଓ ଚନ୍ଦ୍ରଦେବଙ୍କୁ ଦର୍ଶନ କରିବା ଅଭିପ୍ରାୟରେ ଖୋଜି ବୁଲିଲ। ଏହା ମତେ ଅଧିକ ଆଶ୍ଚର୍ଯ୍ୟ କରିଛି। ଲୋକଗଳ୍ପ କିମ୍ବା ପୁରାଣ ଗଳ୍ପ ଗୁଡ଼ିକ ସରସ ସୁନ୍ଦର ହେଲେ ମଧ୍ୟ ସେଗୁଡ଼ିକ ଲୋକଙ୍କର କଳ୍ପନାର ଆଧାରରେ ରଚିତ। ତେଣୁ ସେଗୁଡ଼ିକରେ ସତ୍ୟତା କମ୍ କିମ୍ବା ଆଦୌ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ। ଏକ ଦେଶର ଲୋକକଥା ଅନୁଯାୟୀ ଚନ୍ଦ୍ର ଧଳା ଛେନା ଗଠିତ ଏକ କ୍ଷୁଧାର୍ତ୍ତ ମହାଶୂନ୍ୟବାସୀ ଜୀବ, ଏ ଧଳା ଛେନା ନିର୍ମିତ ଚନ୍ଦ୍ରକୁ ପ୍ରତିଦିନ ଖଣ୍ଡେ ଖଣ୍ଡେ ଖାଇ ଶେଷରେ ପୁରା ଚନ୍ଦ୍ରକୁ ଗର୍ଭସାତ୍ କରିବା ଫଳରେ, ଚନ୍ଦ୍ର ଧୀରେ ଧୀରେ କ୍ଷୟ ହୋଇ, ଆକାଶମାର୍ଗରୁ ପୁରାପୁରି ଅଦୃଶ୍ୟ ହୋଇ ଯାଆନ୍ତି। ଫଳରେ ଅମାବାସ୍ୟା ରାତି ଅନ୍ଧକାରାଚ୍ଛନ୍ନ ହୋଇଥାଏ। ତୁମ୍ଭେମାନେ ଏ ଚନ୍ଦ୍ରପୃଷ୍ଠକୁ ଆସି ସେ ଲୋକକଥା କେତେଦୂର ସତ୍ୟ, ତାର ଚାକ୍ଷୁସ ପ୍ରମାଣ ପାଉଛ। ଚନ୍ଦ୍ର ଧଳା ଛେନା ଦ୍ୱାରା ନିର୍ମିତ ନୁହେଁ, ପରିବର୍ତ୍ତେ ଏହା ମଧ୍ୟ ଆମ ପୃଥିବୀ ଭଳି, ଧୂଳି ଓ ପଥର ଇତ୍ୟାଦି ଦ୍ୱାରା ଗଠିତ ହୋଇଛି।''

''ଜ୍ଞାନୀ ମହାଶୟ, ଆପଣଙ୍କର ଏ ଛେନାଖିଆ ଶୂନ୍ୟାକାଶବାସୀର କାହାଣୀ ଶୁଣି, ମୋର ଗୋଟିଏ କଥା ମନେ ପଡ଼ିଲା।'' କାଉ ଜ୍ଞାନଚନ୍ଦ୍ରଙ୍କ କହିବା ମଝିରେ ବାଧା ଦେଇ କହି ଉଠିଲା, ''ମୁଁ ପୁରାଣର ଏକ ଗଳ୍ପ ଶୁଣିଥିଲି ଓ ନିଜ ଆଖିରେ ମଧ୍ୟ କେତେଥର ଦେଖିଛି, ଚନ୍ଦ୍ରକୁ ପୁରାଣ ବର୍ଣ୍ଣିତ ରାହୁ ଓ କେବେ କେବେ କେତୁ ରାକ୍ଷସ ଅଦୃଶ୍ୟରେ ରହି ସେହିପରି ଅଳ୍ପ ଅଳ୍ପ କରି ଖାଇ ଅର୍ଦ୍ଧଗ୍ରାସ କିମ୍ବା ପୂର୍ଣ୍ଣଗ୍ରାସ କରିଥାଆନ୍ତି। ଖାଲି କଣ ଚନ୍ଦ୍ର, ସେହିପରି ସୂର୍ଯ୍ୟ ମହାପ୍ରଭୁଙ୍କୁ ମଧ୍ୟ ରାହୁ ଓ କେତୁ ରାକ୍ଷସ, କେବେ କେବେ ଅର୍ଦ୍ଧ କିମ୍ବା ପୂର୍ଣ୍ଣଗ୍ରାସ କରି ଥାଆନ୍ତି। କିନ୍ତୁ ଗଳ୍ପ ଅନୁଯାୟୀ ରାହୁ ଓ କେତୁ ରାକ୍ଷସଙ୍କର କଟା ମୁଣ୍ଡ ଓ କଟା ଶରୀର ହୋଇଥିବାରୁ ଚନ୍ଦ୍ରଦେବ ଓ ସୂର୍ଯ୍ୟଦେବ ସେହି ବାଟେ ବାହାରି ଆସି ଆକାଶରେ ଆବିର୍ଭୂତ ହୋଇ ଥାଆନ୍ତି।''

''ସୁବୋଧ ଭାଇ ଆମକୁ ରାହୁ ଓ କେତୁ ରାକ୍ଷସଙ୍କ ଗଳ୍ପଟି ଶୁଣାଅ। ଆମେ ତାହା ଶୁଣିବାକୁ ଚାହୁଁ''। ମାଛ ଓ ଠେକୁଆ ଦୁହେଁ ଆଗ୍ରହଭରା ସ୍ୱରରେ ଏକ ସଙ୍ଗେ କହି ଉଠିଲେ।

''ହଁ ନିଶ୍ଚୟ ତୁମ ସାଥି ଦୁଇଜଣଙ୍କୁ ସେ ଗଳ୍ପ କହି ଶୁଣାଇ ଦିଅ'' ପେଚା ମହାଶୟ କହିଲେ।

''ତେବେ ଶୁଣ'' କାଉ ଆରମ୍ଭ କଲା। ''ବ୍ରହ୍ମା ସୃଷ୍ଟି ସର୍ଜନା କଲେ। ସେ ଦେବତା, ମାନବ, ଜୀବଜନ୍ତୁ ସମସ୍ତଙ୍କୁ ସୃଷ୍ଟି କଲେ। କାଳକ୍ରମେ ବହୁ ଅସୁର ମଧ୍ୟ ଜନ୍ମ ଲାଭ କଲେ।

ଅସୁରମାନେ ମହାଶକ୍ତିଶାଳୀ ଓ ଦୁଷ୍ଟ ପ୍ରକୃତିର ଥିଲେ। ଦେବତାମାନଙ୍କ ସହ ସେମାନଙ୍କର ସଦା କଳହ ଓ ଯୁଦ୍ଧ ଲାଗି ରହିଥିଲା। ଥରେ ଅସୁରଗଣ, ସ୍ୱର୍ଗାଲୋକ ଆକ୍ରମଣ କରି ଅଧିକାର କଲେ ଓ ଦେବରାଜ ଇନ୍ଦ୍ରଙ୍କ ସହ ସମସ୍ତ ଦେବଗଣଙ୍କୁ ସ୍ୱର୍ଗରୁ ତଡି ଦେଲେ। ଇନ୍ଦ୍ରଙ୍କ ସହ ଦେବତାମାନେ ସାହାଯ୍ୟ ପାଇଁ ଭଗବାନ ବିଷ୍ଣୁଙ୍କର ଶରଣ ପଶିଲେ। ବିଷ୍ଣୁ ଦେବତାମାନଙ୍କୁ ସର୍ବଶକ୍ତିଶାଳୀ ଓ ଅମର କରିବା ପାଇଁ ସେମାନଙ୍କୁ ଅମୃତ ପାନ କରିବାକୁ କହିଲେ। ଅମୃତ, କ୍ଷୀର ସମୁଦ୍ରର ଅତଳ ଗର୍ଭରେ ଗୁପ୍ତ ହୋଇ ରହିଥିଲା। ସମୁଦ୍ର ମଧ୍ୟରୁ ଅମୃତ ବାହାର କରିବା ପାଇଁ ଦେବତାମାନେ କ୍ଷୀରସମୁଦ୍ର ମନ୍ଥନ କରିବାକୁ ସ୍ଥିର କଲେ। କିନ୍ତୁ ଏ କାର୍ଯ୍ୟ କେବଳ ଦେବତାମାନଙ୍କ ପାଇଁ ସହଜସାଧ ନ ଥିଲା। ସେଥିପାଇଁ ସେମାନେ ଶକ୍ତିଶାଳୀ ଅସୁରଗଣଙ୍କର ସାହାଯ୍ୟପ୍ରାର୍ଥୀ ହେଲେ। ଦେବଗଣ, ଅସୁରମାନଙ୍କୁ ସାଗର ମନ୍ଥନ ସମ୍ଭୂତ ଅମୃତ ସହ ସମସ୍ତ ପଦାର୍ଥର ଅଧାଭାଗ ଦେବାର ପ୍ରଲୋଭନ ଦେଖାଇ ରାଜି କରାଇଥିଲେ। କ୍ଷୀରସମୁଦ୍ର ମନ୍ଥନ କାର୍ଯ୍ୟ ଆରମ୍ଭ ହେଲା। ଏକ ପାଖରେ ଦେବଗଣ ଓ ଆର ପାଖରେ ଦାନବଗଣ ରହି, ସର୍ବୋଚ୍ଚ ମନ୍ଦର ପର୍ବତକୁ ମନ୍ଥନର ଦଣ୍ଡ ଓ ବାସୁକୀ ନାଗକୁ ମନ୍ଥନରେ ରଜ୍ଜୁ ରୂପେ ବ୍ୟବହାର କରି ସମୁଦ୍ର ମନ୍ଥନ କରିଥିଲେ। ଭଗବାନ ବିଷ୍ଣୁ, ମନ୍ଥନ କାର୍ଯ୍ୟରେ ସାହାଯ୍ୟ କରିବାକୁ କଚ୍ଛପ ରୂପ ଧାରଣ କରି, ମେରୁ ପର୍ବତକୁ ନିଜ ପୃଷ୍ଠରେ ଧାରଣ କରି ତାହା ଭାସମାନ ଅବସ୍ଥାରେ ରଖିଥିଲେ। ମନ୍ଥନ କ୍ରମେ, ସମୁଦ୍ର ମଧ୍ୟରୁ ଐରାବତ ହାତୀ, ଉଚ୍ଚୈଶ୍ରବା ଘୋଡା, ଅପ୍ସରା ଗଣ, ପାରିଜାତ ପୁଷ୍ପ, ମହାଲକ୍ଷ୍ମୀ ଓ ବହୁ ଧନରତ୍ନ ବାହାରି ଥିଲା। ସେଗୁଡିକ ଦେବଗଣଙ୍କ ଦ୍ୱାରା ଅଧିକୃତ ହୋଇଥିଲା। ଦେବତା ମାନଙ୍କର ଏପରି ଆଚରଣ ଦ୍ୱାରା ଅସୁରଗଣ ନିରାଶ ଓ କ୍ରୋଧିତ ହୋଇଥିଲେ ମଧ୍ୟ ଅମୃତ ଉଦ୍ଭବ ହେବା ପର୍ଯ୍ୟନ୍ତ, ଧୈର୍ଯ୍ୟ ଧରି ମନ୍ଥନ କାର୍ଯ୍ୟ କରି ଚାଲିଥିଲେ। ଅବଶେଷରେ ଦେବ ବୈଦ୍ୟ ଧନ୍ୱନ୍ତରୀ, ଅମୃତ କୁମ୍ଭ ହସ୍ତରେ ଧରି କ୍ଷୀରସମୁଦ୍ର ମଧ୍ୟରୁ ଉଦ୍ଭବ ହେଲେ। ଚତୁର୍ଦ୍ଦିଗରେ ଆନନ୍ଦର କୋଳାହଳ ବ୍ୟାପିଗଲା। ଏହି ଅବସରରେ ଅସୁରଗଣ ମନ୍ଥନ କାର୍ଯ୍ୟ ତ୍ୟାଗ କରି, ଦ୍ରୁତ ବେଗରେ ଯାଇ ଧନ୍ୱନ୍ତରୀଙ୍କ ହସ୍ତରୁ ଅମୃତକୁମ୍ଭ ଛଡାଇ ଆଣି ମନ୍ଦର ପର୍ବତ ଉପରକୁ ଚଢ଼ିଗଲେ। ଦେବତାମାନଙ୍କୁ ଭାଗ ନ ଦେଇ ନିଜ ନିଜ ମଧ୍ୟରେ ଅମୃତ ବାଣ୍ଟି ପାନ କରିବାକୁ ପ୍ରସ୍ତୁତ ହେଲେ। ଦେବତାମାନେ ମହାବିପଦରେ ପଡିଲେ। କାରଣ ସେମାନେ ଜାଣିଥିଲେ ଯେ, ଅସୁରଗଣ ଅମୃତ ପାନ କଲେ, ଅଜର ଅମର ହୋଇ ଦେବତାମାନଙ୍କ ସମେତ ସାରା ସୃଷ୍ଟିକୁ ନାଶ କରିଦେବେ। ତେଣୁ ଦେବଗଣ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ। ବିଷ୍ଣୁ ଦେବତାମାନଙ୍କୁ ସାହାଯ୍ୟ କରିବାକୁ ଇଚ୍ଛା କରି ନିଜେ ଏକ ଅପୂର୍ବ ରୂପବତୀ କନ୍ୟା, ମୋହିନୀର ରୂପ ଧାରଣ କରି ଦେବତା ଓ ଅସୁର ମାନଙ୍କ ମଧ୍ୟରେ ଆର୍ବିଭୂତ ହେଲେ।

"ରାକ୍ଷସମାନେ ବିଷ୍ଣୁଙ୍କର ମାୟା ରୂପ ଚିହ୍ନି ନପାରି ସେ ମୋହିନୀ କନ୍ୟାର ରୂପଗୁଣରେ ମୋହିତ ହୋଇ ତାର ଚତୁର୍ଦ୍ଦିଗରେ ବେଢ଼ିଗଲେ। ମୋହିନୀ ନିଜ ସୌନ୍ଦର୍ଯ୍ୟ ଓ ମଧୁରାଳାପ ଦ୍ୱାରା ଅସୁରମାନଙ୍କୁ ବଶୀଭୂତ କରି ସେମାନଙ୍କଠାରୁ ଅମୃତକୁମ୍ଭଟି କାଢି ଆଣି କହିଲେ ଯେ ତା ଦୃଷ୍ଟିରେ, ଦେବତା ଓ ଅସୁର ଉଭୟ ସମାନ। ତେଣୁ ସେ ପକ୍ଷପାତିତା ନ କରି ଉଭୟ ଦଳଙ୍କୁ ସମାନଭାବେ ଅମୃତ ପରଶି ଦେବ। ତେଣୁ ଦେବତା ଓ ଅସୁରମାନେ ଦୁଇଦଳ ହୋଇ ବସି ଯାଆନ୍ତୁ। ଅସୁରଗଣ ଆପତ୍ତି ନ କରି ମୋହିନୀ କଥାରେ ରାଜି ହୋଇଥିଲେ। ଦେବତା ଓ ଅସୁର ଗଣ ଦୁଇ ଦଳ ହୋଇ ବସିଗଲେ। ମୋହିନୀ ରୂପୀ ବିଷ୍ଣୁ ଅମୃତ ପରଶିବା ଆରମ୍ଭ କଲେ। ପ୍ରଥମେ ସେ ଦେବଗଣଙ୍କୁ

ଅମୃତ ପରଶି ଗଲେ। ଇତି ମଧ୍ୟରେ ରାହୁ ନାମକ ଏକ ଅସୁର ଦେବତାଙ୍କ ଛଦ୍ମବେଶ ଧାରଣ କରି ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଧ୍ୟରେ ବସି ଅମୃତ ପାନ କରିବାକୁ ଆରମ୍ଭ କରିଦେଲା। ସୂର୍ଯ୍ୟ ଓ ଚନ୍ଦ୍ର ରାହୁର ପ୍ରକୃତ ରୂପ ଜାଣି ପାରି ବିଷ୍ଣୁଙ୍କୁ ଇଙ୍ଗିତ କରି ଜଣାଇ ଦେଇଥିଲେ। ବିଷ୍ଣୁ ତତ୍‌କ୍ଷଣାତ୍ ତାଙ୍କ ଅମୋଘ ଅସ୍ତ୍ର, ସୁଦର୍ଶନ ଚକ୍ର ପଠାଇ ରାହୁ ରାକ୍ଷସର ଶିରଚ୍ଛେଦ କରିଥିଲେ।

"କିନ୍ତୁ ଅମୃତ ପାନ ଯୋଗୁ ରାହୁର ପ୍ରାଣନାଶ ହୋଇ ନଥିଲା। ତା ପରିବର୍ତ୍ତେ ତାର ଶିରଭାଗ ରାହୁ ଓ ଶରୀର ଭାଗ କେତୁ ରାକ୍ଷସରେ ପରିଣତ ହୋଇଥିଲା। ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପାଇଁ ଏ ଦୂରବସ୍ଥା ହୋଇଥିବାରୁ, ରାହୁ ଓ କେତୁ ସେହି ଦିନରୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଗ୍ରାସ କରିବାକୁ ସେମାନଙ୍କ ପଛରେ ଗୋଡାଇଲେ। ସମୟେ ସମୟେ ସେମାନେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ନିକଟବର୍ତ୍ତୀ ହୋଇ ସେମାନଙ୍କୁ ଗ୍ରାସ କରିଥାଆନ୍ତି। କେବେ କେବେ ଅର୍ଦ୍ଧଗ୍ରାସ ଓ ଅନ୍ୟ କେବେ ପୂର୍ଣ୍ଣଗ୍ରାସ କରିଥାଆନ୍ତି।

"ମୁଁ ଥରେ ଏ ଘଟଣା ନିଜ ଆଖିରେ ଦେଖିଛି। ଦିନେ ମଧ୍ୟାହ୍ନରେ ମୁଁ ଅମୃତଭଣ୍ଡା ଗଛରେ ବସି ଗୋଟେ ପାଚିଲା ଅମୃତଭଣ୍ଡା ଖାଇବାକୁ ଆରମ୍ଭ କରିଥିଲି। ହଠାତ୍ ପାରିପାର୍ଶ୍ୱିକ ଅବସ୍ଥାରେ ଏକ ଅଦ୍ଭୁତ ପରିବର୍ତ୍ତନ ଲକ୍ଷ୍ୟ କଲି। ଏକ ଅଜଣା ଆଶଙ୍କାର ଛାୟା ଚତୁର୍ଦ୍ଦିଗରେ ଛାଇଗଲା। ସୂର୍ଯ୍ୟାଲୋକ ଧୀରେ ଧୀରେ କମି ଆସିଲା। ମୁଁ ଉପରକୁ ଆକାଶକୁ ଚାହିଁ ସ୍ତମ୍ଭୀଭୂତ ହୋଇଗଲି। ମେଘହୀନ ନୀଳ ଆକାଶରେ ସୂର୍ଯ୍ୟ ଧୀରେ ଧୀରେ ଏକ ରହସ୍ୟମୟ କୃଷ୍ଣକାୟ ବସ୍ତୁ ମଧ୍ୟକୁ ପ୍ରବେଶ କରିବାକୁ ଲାଗିଲା। ଅଳ୍ପକ୍ଷଣ ପରେ ଆକାଶପଟ୍ଟରୁ ସୂର୍ଯ୍ୟ ପୂରା ଲୁଚିଗଲେ। ପୃଥିବୀ ପୃଷ୍ଠରୁ ଦିବାଲୋକ ଲିଭିଯାଇ ଅନ୍ଧକାର ମାଡି ଆସିଲା। ତାରା ଗୁଡ଼ିଏ ମଧ୍ୟ ଦପ୍ ଦପ୍ କରି ଜଳି ଉଠିଲେ। ମଧ୍ୟାହ୍ନର ଉଷ୍ଣ ବାୟୁକୁ ଅପସାରିତ କରି ହଠାତ୍ ଶୀତଳ ବାୟୁ ପ୍ରବାହିତ ହୋଇଥିଲା। ଏକ ଅଜଣା ଆତଙ୍କରେ ମୋର ସର୍ବାଙ୍ଗରେ ରୋମାଞ୍ଚ ଜାତ ହେଲା। ଫୁଲ ଗୁଡିକର ପାଖୁଡା ବନ୍ଦ ହୋଇଗଲା। ଜୀବଜନ୍ତୁଙ୍କ ସ୍ୱରଶବ୍ଦ ଓ ପକ୍ଷୀ ମାନଙ୍କର କଳକାକଳି ହଠାତ୍ ବନ୍ଦ ହୋଇଗଲା। ଚତୁର୍ଦ୍ଦିଗରେ ନିସ୍ତବ୍ଧତା ଘୋଟିଗଲା। ଜଙ୍ଗଲର ସମସ୍ତ ପଶୁପକ୍ଷୀ ସହ ମୁଁ ମଧ୍ୟ ରାତି ହୋଇଗଲା ଭାବି ନିଜ ନିଜର ବାସସ୍ଥଳୀକୁ ଫେରିଯାଇ ଶୋଇବା ପାଇଁ ପ୍ରସ୍ତୁତ ହୋଇଗଲୁ। ନିଶାଚର ଜୀବଜନ୍ତୁ ନିଜ ନିଜର ଗୁପ୍ତ ସ୍ଥାନରୁ ବାହାରି ଆସି ଖାଦ୍ୟ ଅନ୍ୱେଷଣ ଆରମ୍ଭ କଲେ। ଆଶ୍ଚର୍ଯ୍ୟର ବିଷୟ ଏହି ଯେ, କିଛି କ୍ଷଣ ପରେ ସୂର୍ଯ୍ୟ ହଠାତ୍ ଆକାଶପଟ୍ଟରେ ପୂର୍ବଭଳି ଉଜ୍ଜ୍ୱଳ କିରଣ ସହ ପ୍ରକାଶିତ ହୋଇଗଲେ। ମୁଁ ଜାଣି ପାରିଲି ଯେ ସୂର୍ଯ୍ୟଦେବଙ୍କୁ ରାହୁ ରାକ୍ଷସ ଗ୍ରାସ କରିଥିଲା କିନ୍ତୁ ରାହୁ ରାକ୍ଷସର ବେକ କଟା ହୋଇଥିବାରୁ ସୂର୍ଯ୍ୟଦେବ ତା କବଳରୁ ମୁକ୍ତ ହୋଇ ବାହାରି ଆସିଲେ। ଏପରି ଅବସ୍ଥା ଚନ୍ଦ୍ରଦେବଙ୍କର ହେବା ମଧ୍ୟ ମୁଁ ନିଜ ଆଖିରେ ଦେଖିଛି। ଏସବୁ ଆଖିରେ ଦେଖିଥିବା ଘଟଣା ଗୁଡିକ କିପରି ଅବିଶ୍ୱାସ କରିବି।"

କାଉର କଥା ଶୁଣି ପେଚା ମହାଶୟ କହିଲେ, "ସୂର୍ଯ୍ୟ ଓ ଚନ୍ଦ୍ର, ଏପରି ଅବସ୍ଥା ମଧ୍ୟ ଦେଇ ଗତି କରିବା ଘଟଣାଗୁଡ଼ିକ ସତ୍ୟ। କିନ୍ତୁ ରାହୁ କିମ୍ବା କେତୁ ନାମକ ରାକ୍ଷସ, ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଗ୍ରାସ କରିବା କାଳ୍ପନିକ ପୁରାଣ ଗଳ୍ପ ଅଟେ। ଚାଇନା ଓ ଅନ୍ୟ କେତେକ ଦେଶରେ ମଧ୍ୟ ଏହିପରି ସମତୁଲ୍ୟ ଲୋକକଥା ପ୍ରଚଳିତ ଅଛି ଓ ସେମାନେ ସୂର୍ଯ୍ୟ ଓ ଚନ୍ଦ୍ରଙ୍କୁ ଗ୍ରାସ କରୁଥିବା ରାକ୍ଷସକୁ ଡ଼ରାଇବା ପାଇଁ ସେ ସମୟରେ, ଉଚ୍ଚନାଦର ବିବିଧ ବାଦ୍ୟଯନ୍ତ୍ର ଯଥା ବାଜା

ଓ ଝାଞ୍ଜ ଇତ୍ୟାଦି ବାଦନ କରିଥାଆନ୍ତି। ଏହା ଲୋକବିଶ୍ୱାସ ମାତ୍ର, କିନ୍ତୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଏପରି ଅବସ୍ଥାପ୍ରାପ୍ତିର ବିଜ୍ଞାନ-ପ୍ରମାଣିତ ସତ୍ୟ ଅନ୍ୟ ପ୍ରକାରର। ମୁଁ ସଂକ୍ଷେପରେ ତାହା ବୁଝାଇ କହୁଛି ଶୁଣ।

''ପୃଥିବୀ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପରିକ୍ରମା କରିବା ସହ ତାର ଉପଗ୍ରହ ଚନ୍ଦ୍ର ପୃଥିବୀର ଚତୁର୍ଦ୍ଦିଗରେ ଘୂରିବୁଲୁଛି। ଏହିପରି ଘୂରି ବୁଲିବା ସମୟରେ ଥରେ ଥରେ ପୃଥିବୀ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ମଧ୍ୟରେ ଏକ ସରଳରେଖାରେ ଅବସ୍ଥାନ କରିବା ଫଳରେ, ପୃଥିବୀର ଛାୟା ଚନ୍ଦ୍ର ଉପରେ ପଡ଼େ, ଫଳରେ କିଛି ସମୟ ପାଇଁ ଚନ୍ଦ୍ରଙ୍କର ଉଜ୍ଜ୍ୱଳ କିରଣ ଭୂପୃଷ୍ଠକୁ ଦେଖାଯାଏ ନାହିଁ। ଏହାକୁ ଚନ୍ଦ୍ରଗ୍ରହଣ କହିଥାଆନ୍ତି। ପୁରାଣ ଗଳ୍ପ ଅନୁଯାୟୀ ରାହୁ କିମ୍ବା କେତୁ ଚନ୍ଦ୍ରଙ୍କୁ ଗ୍ରାସ କଲା ବୋଲି କୁହାଯାଏ। ସେହିପରି କେବେ କେବେ ଚନ୍ଦ୍ର, ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ ଏକ ସରଳ ରେଖାରେ ଅବସ୍ଥାନ କରିବା ଦ୍ୱାରା ଚନ୍ଦ୍ର, ସୂର୍ଯ୍ୟାଲୋକକୁ ଆଚ୍ଛାଦିତ କରିଥାଏ। ଫଳରେ ସୂର୍ଯ୍ୟ କିଛି ସମୟ ପାଇଁ ଭୂପୃଷ୍ଠକୁ ଦେଖାଯାଏ ନାହିଁ। ଏହାକୁ ସୂର୍ଯ୍ୟପରାଗ କହନ୍ତି। ପୁରାଣ ଗଳ୍ପ ଅନୁଯାୟୀ ରାହୁ ବା କେତୁ ଗ୍ରାସ କଲା ବୋଲି କୁହାଯାଏ। ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗ କେବେ କେବେ ଆଂଶିକ ଭାବେ ହୋଇଥାଏ ତ କେବେ କେବେ ଅର୍ଦ୍ଧ କିମ୍ବା ପୂର୍ଣ୍ଣ ହୋଇଥାଏ। କିନ୍ତୁ ଏହି ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ, ଅଳ୍ପ କ୍ଷଣସ୍ଥାୟୀ। କାରଣ ପୃଥିବୀ ଓ ଚନ୍ଦ୍ର ଏକ ସ୍ଥାନରେ ସ୍ଥିର ନ ରହି ଘୂରି ବୁଲୁଛନ୍ତି। ଚନ୍ଦ୍ରଙ୍କର କ୍ଷୟ ବୃଦ୍ଧି ମଧ୍ୟ କୌଣସି ମହାକାଶବାସୀ ଜୀବ, ଛେନା ଭଳି ଖଣ୍ଡେ ଖଣ୍ଡେ କାମୁଡ଼ି ଖାଇବା ଦ୍ୱାରା ଘଟି ନଥାଏ। ଏହା ଦୁଇଟି କାରଣରୁ ହୋଇଥାଏ।

''ପ୍ରଥମ କାରଣ ହେଲା ଚନ୍ଦ୍ରର ପୃଥିବୀ ଚତୁର୍ଦ୍ଦିଗରେ ପରିକ୍ରମଣ ପ୍ରଣାଳୀ ଓ ଦ୍ୱିତୀୟ କାରଣ ହେଲା ସୂର୍ଯ୍ୟାଲୋକର ପ୍ରଭାବ। ଚନ୍ଦ୍ର ନିଜର କକ୍ଷ ଚତୁର୍ଦ୍ଦିଗରେ ଥରେ ଘୂରିବୁଲିବାର ସମୟ ଓ ପୃଥିବୀର ଚତୁର୍ଦ୍ଦିଗରେ ପରିକ୍ରମଣ କରିବାର ସମୟ ଏକା। ପ୍ରାୟ ୨୮ ଦିନ। ତୁମ୍ଭେମାନେ ଜାଣ ଯେ ପୃଥିବୀର ଯେପରି ନିଜର ଆଲୋକ ନାହିଁ ଚନ୍ଦ୍ରର ମଧ୍ୟ ନିଜର ଆଲୋକ ନାହିଁ। ଏହା ସୂର୍ଯ୍ୟାଲୋକ ଦ୍ୱାରା ଆଲୋକିତ ହୋଇଥାଏ। ଚନ୍ଦ୍ର ଧୀରେ ଧୀରେ ତାର ନିଜସ୍ୱ କକ୍ଷ ଓ ପୃଥିବୀର ଚତୁର୍ଦ୍ଦିଗରେ ଘୂରିବୁଲିବା ସମୟରେ ଏହାର କିଛି କିଛି ଅଂଶ ସୂର୍ଯ୍ୟାଲୋକ ଦ୍ୱାରା ଆଲୋକିତ ହୋଇ ପ୍ରଥମା, ଦ୍ୱିତୀୟା ଇତ୍ୟାଦି ଚନ୍ଦ୍ର ରୂପେ ନାମିତ ହୋଇ ଶେଷରେ ୧୪ ଦିନ ପରେ ପୂର୍ଣ୍ଣମୀ ଚନ୍ଦ୍ର ରୂପେ, ପୃଥିବୀକୁ ଦେଖାଯାଏ। ଏହି ୧୪ ଦିନକୁ ଶୁକ୍ଳପକ୍ଷ କହନ୍ତି। ପୁନଶ୍ଚ, ଚନ୍ଦ୍ର ଏହିପରି ଘୂରି ବୁଲିବା କ୍ରମେ ଧୀରେ ଧୀରେ ସୂର୍ଯ୍ୟଙ୍କ ଦିଗକୁ ଗତି କରିବା ସହ, ପୂର୍ଣ୍ଣଚନ୍ଦ୍ରଙ୍କ ଆଲୋକ କ୍ଷୟ ହୋଇ ହୋଇ ୧୪ ଦିନ ପରେ ସୂର୍ଯ୍ୟଙ୍କ ନିକଟବର୍ତ୍ତୀ ହେବା ଦ୍ୱାରା ପୃଥିବୀକୁ ଚନ୍ଦ୍ର ଦେଖାଯାଏ ନାହିଁ। କାରଣ ସୂର୍ଯ୍ୟ, ଚନ୍ଦ୍ରର ପଶ୍ଚାତ୍‌ରେ ଅବସ୍ଥାନ କରିବା ଦ୍ୱାରା ଚନ୍ଦ୍ରଙ୍କର ଅନ୍ଧକାର ଭାଗଟି ପୃଥିବୀ ଦିଗକୁ ରହେ। ଏହାକୁ ଅମାବାସ୍ୟା କହିଥାଆନ୍ତି। ପୂର୍ଣ୍ଣମୀ ଠାରୁ ଆରମ୍ଭ କରି ଅମାବାସ୍ୟା ହେବାକୁ ୧୪ ଦିନ ଲାଗିଥାଏ। ଏହାକୁ କୃଷ୍ଣପକ୍ଷ କୁହାଯାଏ।

''ତୁମ୍ଭେମାନେ ଆଉ ଗୋଟିଏ କଥା ଜାଣିରଖ ଯେ ଚନ୍ଦ୍ର ନିଜ କକ୍ଷ ଚତୁର୍ଦ୍ଦିଗରେ ଥରେ ବୁଲି ଆସିବାର ସମୟ ଓ ପୃଥିବୀର ଚତୁର୍ଦ୍ଦିଗରେ ବୁଲିବାର ସମୟ ଏକା ହୋଇ ଥିବାରୁ, ଚନ୍ଦ୍ରର ମାତ୍ର ଗୋଟିଏ ପାଖ ସର୍ବଦା ଭୂପୃଷ୍ଠକୁ ଦେଖାଯାଏ। ତାହା ହେଲା, ଚନ୍ଦ୍ରର ଶୁକ୍ଳପକ୍ଷର ଭାଗ। ସେଥିପାଇଁ ଚନ୍ଦ୍ରର ଆରପାଖ, ଯାହା ଆମ୍ଭମାନଙ୍କୁ ଦୃଶ୍ୟ ହୁଏ ନାହିଁ, ତାହା ବିଷୟରେ ବହୁ

ଦିନ ଯାଏ ମାନବର କୌଣସି ଧାରଣା ନ ଥିଲା । ଏହାର ପରବର୍ତ୍ତୀ କାଳରେ, ମାନବ କେତେଗୁଡ଼ିଏ ଯନ୍ତ୍ରପାତି ଓ କ୍ୟାମେରା ଖଞ୍ଜା ହୋଇଥିବା ରକେଟ୍ ଚନ୍ଦ୍ରର ଅପର ପାର୍ଶ୍ୱକୁ ପଠାଇ ତାହା ବିଷୟରେ ବହୁ ତଥ୍ୟ ସଂଗ୍ରହ କରିଥିଲା । ଫୋଟୋ ଗୁଡିକରୁ ମନୁଷ୍ୟ ଜାଣିପାରୁଥିଲା ଯେ ଏ ପାର୍ଶ୍ୱ ଅପେକ୍ଷା ଚନ୍ଦ୍ରର ଅପରପାର୍ଶ୍ୱରେ ବେଶୀ ସଂଖ୍ୟାରେ ଛୋଟ ଛୋଟ ଗାତ ରହିଛି ଓ ଏ ପାର୍ଶ୍ୱ ଭଳି ବିସ୍ତୃତ ସମତଳ ଭୂମି କିମ୍ବା ମେରିଆ (Maria) ଗୁଡିକ ସେଠି ନାହିଁ । ଚନ୍ଦ୍ରର ଦୁଇ ପାର୍ଶ୍ୱର ଦୃଶ୍ୟ ଏପରି ପୃଥକ୍ ହେବାର କାରଣ ମାନବ ବହୁ ଚେଷ୍ଟା କରି ମଧ୍ୟ ସମ୍ପୂର୍ଣ୍ଣରୂପେ ଜାଣି ପାରିନାହିଁ ।

''ତୁମ୍ଭେ ପୃଥିବୀରୁ ଚନ୍ଦ୍ରପୃଷ୍ଠରେ ଦେଖୁଥିବା ଠେକୁଆର ଆକୃତି, ଚନ୍ଦ୍ରର ପର୍ବତ ଓ ଗାତ ଗୁଡିକ ଦ୍ୱାରା ହିଁ ସୃଷ୍ଟି ହୋଇଛି । ପ୍ରକୃତପକ୍ଷେ ଚନ୍ଦ୍ରପୃଷ୍ଠରେ କୌଣସି ଠେକୁଆ କିମ୍ବା ଚନ୍ଦ୍ର ଦେବ କେହିହେଲେ ବାସ କରନ୍ତି ନାହିଁ ।''

ପଶୁପକ୍ଷୀମାନେ ଏକ ମନ ଓ ଏକ ଲୟରେ ପେଚାମହାଶୟଙ୍କ ବକ୍ତବ୍ୟ ଶୁଣୁଥିଲେ । ହଠାତ୍ କଥା ବଦଳାଇ ପେଚାମହାଶୟ କହି ଉଠିଲେ ।

''ଏଥର ସମସ୍ତେ ଉଠ । ସମୟ ହୋଇଗଲା । ଆମେ ଚନ୍ଦ୍ରପୃଷ୍ଠରେ କାର୍ଯ୍ୟ ଶେଷ କରି ପ୍ରତ୍ୟାବର୍ତ୍ତନ କରିବାର ବନ୍ଦୋବସ୍ତ କରିବା । ଆମେ ଚନ୍ଦ୍ର ବିଜୟର ସଂକେତ ସ୍ୱରୂପ, ଏହାର ପୃଷ୍ଠରୁ କେତେ ଗୁଡିଏ ବଛାବଛା ଛୋଟ ପଥର, ଭୂପୃଷ୍ଠକୁ ନେଇଯିବା ।

''ତୁମ୍ଭେମାନେ ଜାଣିବା ଦରକାର ଯେ ଚନ୍ଦ୍ରପୃଷ୍ଠରେ, ଆପୋଲୋ-୧୧ରେ ମାନବ ବ୍ୟୋମଚାରୀ କି କି କାର୍ଯ୍ୟ ସମ୍ପନ୍ନ କରିଥିବେ । ମୁଁ ତୁମ୍ଭମାନଙ୍କୁ କହୁଛି ଶୁଣ । ମାନବ ବ୍ୟୋମଚାରୀ ତିନିଜଣ ଚନ୍ଦ୍ରପୃଷ୍ଠରେ 'ସି-ଅଫ-ଟ୍ରାଙ୍କ୍ୟୁଲିଟି' (Sea of Tranquility) ନାମକ ସ୍ଥାନରେ ଓହ୍ଲାଇ ଆମେରିକାର ଜାତୀୟ ପତାକାଟି ଉତ୍ତୋଳନ କରିବାର ବ୍ୟବସ୍ଥା କରିଥିବେ । ଏହାପରେ, ସେମାନେ ନାସା ପ୍ରେରିତ, କେତୋଟି ବୈଜ୍ଞାନିକ ଯନ୍ତ୍ରପାତି ଚନ୍ଦ୍ରଭୂମିରେ ସ୍ଥାପନ କରିଥିବେ । ଏଗୁଡିକ ଦ୍ୱାରା ପୃଥିବୀର ବୈଜ୍ଞାନିକମାନେ ଦୂରତ୍ୱ ଜାଣିବା ସହ, ଚନ୍ଦ୍ରର ଗଠନପ୍ରଣାଳୀ, ଅଗ୍ନ୍ୟୁତ୍ପାତ କ୍ରିୟା, ପ୍ରାକୃତିକ ପରିବର୍ତ୍ତନ ଓ ଅନ୍ୟାନ୍ୟ କ୍ରିୟାକଳାପ ବିଷୟରେ ବହୁ ଜ୍ଞାନ ଅର୍ଜନ କରିବାକୁ ସକ୍ଷମ ହୋଇପାରିବେ । ଏହା ବ୍ୟତୀତ, ମାନବବ୍ୟୋମଚାରୀମାନେ, ଚନ୍ଦ୍ରପୃଷ୍ଠରୁ କିଛି ଧୂଳି ପଥର ସଂଗ୍ରହ କରି ପୃଥିବୀକୁ ନେଇଥିବେ । ପୃଥିବୀର ବୈଜ୍ଞାନିକମାନେ ସେଗୁଡିକ ଗବେଷଣାଗାରରେ ପରୀକ୍ଷା କରି, ତନ୍ମଧ୍ୟସ୍ଥ ବିଭିନ୍ନ ଉପାଦାନ ସମ୍ବନ୍ଧରେ ବିଶେଷଜ୍ଞାନ ଅର୍ଜନ କରି ପାରିବେ । ବର୍ତ୍ତମାନ ଚାଲ, ଏଠୁ କାମ ଶେଷ କରି ଚନ୍ଦ୍ରପୃଷ୍ଠରୁ ବିଦାୟ ଗ୍ରହଣ କରିବା ।''

ମାଛ, ଠେକୁଆ ଓ କାଉ ପେଚାମହାଶୟଙ୍କ ନିର୍ଦ୍ଦେଶରେ ଚନ୍ଦ୍ରପୃଷ୍ଠର ବିଭିନ୍ନ ସ୍ଥାନରୁ ଧୂଳି ଓ କେତୋଟି ଛୋଟ ପଥର ସଂଗ୍ରହ କରି ପାଖରେ ଥିବା ଥଳି ଗୁଡିକ ଭିତରେ ରଖିଲେ । ପେଚା ମହାଶୟ ଇତି ମଧ୍ୟରେ, ଯାନ ମଧ୍ୟକୁ ପ୍ରସ୍ଥାନ କରି, କିଛି କ୍ଷଣ ପରେ ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଏକ ପ୍ଲେଟ ଧରି ବାହାରକୁ ଆସିଲେ । କାର୍ଯ୍ୟରତ ପଶୁପକ୍ଷୀ ତିନିଜଣଙ୍କୁ ପାଖକୁ ଡାକି, ତାହା ଉପରେ ଲେଖା ହୋଇଥିବା ବାକ୍ୟଟି ସମସ୍ତଙ୍କୁ ପଢିବାକୁ ଅନୁରୋଧ କଲେ । ପଶୁପକ୍ଷୀ ତିନିଜଣ ସେପରି କଲେ । ସେ ପ୍ଲେଟରେ ଲେଖାଥିଲା --

''ମାନବର, ସମସାମୟୀକ ଚନ୍ଦ୍ର ବିଜୟୀ ପଶୁପକ୍ଷୀ ସମାଜ''

ଏହା ତଳେ ପେଚାମହାଶୟଙ୍କ ସହ ପଶୁପକ୍ଷୀ ତିନିଜଣଙ୍କ ନାଁ ଲେଖାହୋଇଥିଲା । ମାଛ,

କାଉ ଓ ଠେକୁଆ ତିନିଜଣ, ଏହା ପଢି ବହୁତ ଖୁସି ହୋଇ ତାଳି ବଜାଇଥିଲେ। ''ଷ୍ଟେନ୍‌ଲେସ୍ ଷ୍ଟିଲ୍‌ର ଏହିପରି ଖଣ୍ଡେ ପ୍ଲେଟ, ମାନବ ବ୍ୟୋମଚାରୀମାନେ ସ୍ଥାପନ କରିଥିବେ।'' ପେଚାମହାଶୟ ହାତରେ ଧରିଥିବା ପ୍ଲେଟଟି ଚନ୍ଦ୍ର ଭୂମିରେ ସ୍ଥାପନ କରୁ କରୁ କହିବାକୁ ଲାଗିଲେ, ''କିନ୍ତୁ ମାନବ ବ୍ୟୋମଚାରୀଙ୍କର ପ୍ଲେଟ୍‌ର ଲେଖା ଭିନ୍ନ। ସେଥିରେ ଲେଖାଥିବ --

''୧୯୬୬ ମସିହାରେ ପୃଥିବୀ ଗ୍ରହର ମନୁଷ୍ୟ, ଏଠି ଓହ୍ଲାଇଥିଲା। ସମଗ୍ର ମାନବ ସମାଜର ଶାନ୍ତିର ବାର୍ତ୍ତା ନେଇ ଆମେ ଆସିଥିଲୁ।''

''ଏହି ପ୍ଲେଟ ତଳେ, ମାନବ ବ୍ୟୋମଚାରୀଙ୍କ ଦସ୍ତଖତ୍ ସହ, ଆମେରିକାର ରାଷ୍ଟ୍ରପତି ରିଚାର୍ଡ ନିକ୍ସନ୍‌ଙ୍କ (Richard Nixon) ନାମ ମଧ୍ୟ ଲେଖା ହୋଇଥିବ।''

''ବର୍ତ୍ତମାନ ଆମ୍ଭମାନଙ୍କର ଚନ୍ଦ୍ରପୃଷ୍ଠର ଅଭିଯାନ ଶେଷ ହେଲା, ବିଦାୟ ନେବାର ସମୟ ଆସିଲା।''

କଥା ଶେଷ କରି ପେଚାମହାଶୟ ପଶୁପକ୍ଷୀ ତିନିଜଣଙ୍କ ସହ ଯାନ ମଧ୍ୟକୁ ଫେରିଗଲେ। ଯାନର ଦ୍ୱାର ବନ୍ଦ କରି ସମସ୍ତେ ନିଜ ନିଜ ସ୍ଥାନରେ ବସି କମରପଟିଟି ମାନ ବାନ୍ଧି ଦେଲେ। ପେଚାମହାଶୟ ଯାନର ଇଞ୍ଜିନ୍ ସହ ଅନ୍ୟାନ୍ୟ ଯନ୍ତ୍ରପାତିର କାର୍ଯ୍ୟକୁଶଳତା ପରୀକ୍ଷା କରି ଦେଖିଲେ। ସମସ୍ତ ପଶୁପକ୍ଷୀ, ଯାନର ଝରକା ମଧ୍ୟଦେଇ, ଚନ୍ଦ୍ରପୃଷ୍ଠ ପ୍ରତି ଶେଷ ଦୃଷ୍ଟି ପକାଇଲେ। ପେଚାମହାଶୟ ଇଞ୍ଜିନ୍ ଚାଲୁ କରିବା ସହ ଯାନ ସଂଲଗ୍ନ ତରଳ ଅମ୍ଳଜାନ ଡିବାଟିରେ ଅଗ୍ନି ସଂଯୋଗ କଲେ ଓ ଯାନଟି ଚନ୍ଦ୍ରପୃଷ୍ଠ ତ୍ୟାଗ କରି ଊର୍ଦ୍ଧ୍ୱମୁଖୀ ହୋଇ ଉଠିଚାଲିଲା। କିଛି ସମୟ ପରେ, ପେଚାମହାଶୟ ପୂନର୍ବାର ରକେଟ୍ ଫୁଟାଇ ଯାନଟିକୁ, କମାଣ୍ଡ ଓ ସର୍ଭିସ ମଡ୍ୟୁଲ ଦୁଇଟିର ମିଳିତ ଭାଗଟି ପରିକ୍ରମଣ କରୁଥିବା ପଥରେ ଅବସ୍ଥାପିତ କରିବା ଦ୍ୱାରା, ତାହା ବୃତ୍ତାକାରରେ ଚନ୍ଦ୍ରର ଚତୁର୍ଦ୍ଦିଗରେ ପରିକ୍ରମା କରିବାକୁ ଲାଗିଲା। କୃଷ୍ଣବର୍ଣ୍ଣର ମହାଶୂନ୍ୟରେ ଝୁଲି ରହିଥିବା, ଧଳା ଓ ନୀଳ ରଙ୍ଗର ପୃଥିବୀ ଗ୍ରହକୁ ଦେଖି ପଶୁପକ୍ଷୀ ତିନିଜଣଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା। ପୃଥିବୀପୃଷ୍ଠକୁ ଫେରିଯିବାକୁ ସମସ୍ତେ ଅସ୍ଥିର ହୋଇ ଉଠିଲେ। କିଛି ସମୟ ଅତିବାହିତ ହୋଇଗଲା। ଶୂନ୍ୟାକାଶ ଯାନଟିରୁ ଇନ୍ଧନ ଶେଷ ହୋଇ ଆସିବାର ସୂଚନା, ଦପ୍ ଦପ୍ କରୁଥିବା ଏକ ଲାଲ୍ ରଙ୍ଗର ଆଲୋକରୁ ମିଳିଥିଲା। ସମସ୍ତ ପଶୁପକ୍ଷୀ ଉଦ୍‌ବିଗ୍ନମନା ହୋଇ, ସେ ଆଲୋକ ଦିଗକୁ ଚାହିଁ ରହିଲେ। ଏହାର ପ୍ରତିକାରର କୌଣସି ଉପାୟ ନଥିଲା। ପଶୁପକ୍ଷୀଙ୍କ ଲୁନାର ମଡ୍ୟୁଲ ଯାନଟି ଇନ୍ଧନଶୂନ୍ୟ ହୋଇ, ସେଇ ପରିକ୍ରମା ପଥରେ ଭାସି ବୁଲିଲା।

''କମାଣ୍ଡ ଓ ସର୍ଭିସ୍ ଭାଗଟିକୁ ବିଚ୍ଛିନ୍ନ କରିବାର ପରିଣାମ ମତେ ଅବଶ୍ୟ ଜଣାଥିଲା ଓ ତୁମ୍ଭମାନଙ୍କୁ ମଧ୍ୟ ସେ ଚେତାବନୀ ଶୁଣାଇଥିଲି। କିନ୍ତୁ, ସେ ସମୟରେ ଅନ୍ୟନ୍ୟୋପାୟ ହୋଇ ଆମେ ସେପରି କରିବାକୁ ବାଧ୍ୟ ହୋଇଥିଲୁ। ବିଭିନ୍ନ ବାଧାବିଘ୍ନ ସତ୍ତ୍ୱେ ଆମେ ପଶୁପକ୍ଷୀମାନେ ଚନ୍ଦ୍ରପୃଷ୍ଠରେ ପାଦ ଦେଇ, ଚନ୍ଦ୍ର ବିଜୟୀ ହୋଇ ଆସିଲୁ। ବର୍ତ୍ତମାନ କିନ୍ତୁ ପୃଥିବୀ ପ୍ରତ୍ୟାବର୍ତ୍ତନର ଉପାୟ କରିବାକୁ ପଡିବ। କମାଣ୍ଡ ଭାଗଟି ଆମର ଆୟତ୍ତାଧୀନ ଥିଲେ ଆମର କୌଣସି ଚିନ୍ତାର କାରଣ ନ ଥାଆନ୍ତା। ଏ ଲୁନାର ମଡ୍ୟୁଲ୍‌ରେ ଯଥେଷ୍ଟ ଟାଙ୍କେଣି ଥିଲେ ମଧ୍ୟ, ଆମେ କୌଣସି ଉପାୟରେ ଏହାଦ୍ୱାରା ପୃଥିବୀକୁ ଫେରିଯିବାକୁ ସକ୍ଷମ ହୋଇ ପାରନ୍ତୁ ନାହିଁ। କାରଣ ଏହା କେବଳ ଚନ୍ଦ୍ରପୃଷ୍ଠରେ ଓହ୍ଲାଇବା ଦୃଷ୍ଟିରୁ ନିର୍ମିତ ହୋଇଛି। ତେଣୁ ଏହା ପୃଥିବୀରେ ପୁନଃ ପ୍ରବେଶର ସରଞ୍ଜାମ

ବିହୀନ। ମୁଁ ଆମ୍ଭମାନଙ୍କର ପୃଥିବୀ ପ୍ରତ୍ୟାବର୍ତ୍ତନ ପାଇଁ ଯଥାସାଧ୍ୟ ଚେଷ୍ଟା କରିବି। ଯାନର ବହିର୍ଭାଗସ୍ଥ ବିପଦସୂଚକ ଲାଲ୍ ଆଲୋକଟି ଜଳାଇ ରଖୁଛି ଓ ନାସା କର୍ତ୍ତୃପକ୍ଷଙ୍କ ସହ ବେତାର ଯୋଗାଯୋଗ ଦ୍ୱାରା କଥାବାର୍ତ୍ତା କରି ଆମ୍ଭମାନଙ୍କର ଏ ସମସ୍ୟାର ସମାଧାନର ଉପାୟ କରିବା ପାଇଁ ଅନୁରୋଧ କରିବି। ତୁମ୍ଭେମାନେ ଧୈର୍ଯ୍ୟ ଧରି ଶାନ୍ତ ଚିତ୍ତରେ ଅପେକ୍ଷା କର।'' କହିବା ଅନୁଯାୟୀ ପେଚାମହାଶୟ କାର୍ଯ୍ୟ ଆରମ୍ଭ କଲେ। ପଶୁପକ୍ଷୀ ବ୍ୟୋମଚାରୀ ତିନିଜଣ, ଉଦ୍‌ବେଗ ଭରା ହୃଦୟରେ ଅପେକ୍ଷା କରି ବସି ରହିଲେ। ପେଚାମହାଶୟ ତାଙ୍କର କାର୍ଯ୍ୟ ଶେଷ କରି ପଶୁପକ୍ଷୀଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ଅତି ଶୀଘ୍ର ନାସାର କର୍ତ୍ତୃପକ୍ଷ, ସେମାନଙ୍କର ପୃଥିବୀ ପ୍ରତ୍ୟାବର୍ତ୍ତନର ବ୍ୟବସ୍ଥା କରିବେ।

ପଶୁପକ୍ଷୀମାନେ ମହାଶୂନ୍ୟରେ ଅସହାୟ ବୋଧ କରିଥିଲେ। ସେମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ।

''ମୁଁ ମୋ ମା'ର କଥା ଶୁଣିଥିଲେ ଭଲ ହୋଇଥାଆନ୍ତା। ମତେ ମୋ ମା କେତେ ଥର କହିଥିଲେ, କେତେ ବୁଝାଇଛନ୍ତି କି, 'ପୁଅ, ବାହା ସାହା ହୋଇ ଛୁଆପିଲା ନେଇ ଘର ସଂସାର କର। ସେଥିରେ ତତେ ସୁଖଶାନ୍ତି ମିଳିବ।' ମୁଁ କିନ୍ତୁ ତାଙ୍କ କଥାରେ କାନ ଦେଲିନାହିଁ। କାରଣ ସେତେବେଳେ ଅବିବାହିତ ରହି ମଜା କରି ଘୂରିବୁଲିବା ମୋର ଅଭ୍ୟାସ ଥିଲା। ସବୁ ଅସାଧ୍ୟ ଓ ବିପଦଜନକ କାମରେ ହାତ ମାରିବା ମୋର ପ୍ରକୃତି ଥିଲା। ନିଆଁ ଭିତରେ ଚାଲିବି, ପ୍ରଳୟଙ୍କରୀ ଝଡ଼ଝଞ୍ଜା ଭିତରେ ଉଡିବି ଓ ଏପରି ସଂକଟମୟ ଚନ୍ଦ୍ରଯାତ୍ରାପାଇଁ ସ୍ୱଇଚ୍ଛାରେ ଯୋଗଦେବି। ଏସବୁ ମୋର ହେଲା ବଦ୍‌ଗୁଣ। ବର୍ତ୍ତମାନ ତାର ଫଳ ମୁଁ ଭୋଗୁଛି ଓ ଭୋଗିବି ମଧ। ଏଠି ମହାଶୂନ୍ୟରେ ମରିଯିବି। ମୋର ନା ରଖିବାକୁ ବଂଶରେ ଆଉ କେହି ରହିବେ ନାହିଁ'', କାଉ ଦୀର୍ଘ ନିଃଶ୍ୱାସ ପକାଇଲା।

''ସୁବୋଧ ଭାଇ, ମୁଁ ତୁମର ଦୁଃଖ ବୁଝିପାରୁଛି'', ମାଛ କହିଲା- ''ମୁଁ ମୋ ପିଲାବେଳେ ଅତି ଦୁଷ୍ଟ ଥିଲି। ସମସ୍ତଙ୍କ କାମରେ ହାତ ମାରିବା ମୋର ସ୍ୱଭାବ ଥିଲା। ମଗର ମାଛ ପଛରେ ଗୋଡାଉଥିଲି। ତାର ଫଳ ସ୍ୱରୂପ ଥରେ ମଗର ମାଛ ମୋର ଲାଙ୍ଗୁଡ଼ ଖଣ୍ଡେ କାମୁଡି ନେଇ ଗଲା। ଏ ଘଟଣାରୁ ମୁଁ ତଥାପି କିଛି ଶିଖିଲି ନାହିଁ। ମୋ ମା କେତେଥର ମତେ ଚେତାବନୀ ଦେଇଥିଲେ 'ଆରେ ଧନ, ତୁ ଏମିତି ବଦମାସୀ କରନା, ଶାନ୍ତ ହୋଇ ଯା। ନିଜ କାମ କର। ଏମିତି ଅନ୍ୟମାନଙ୍କ ଧନ୍ଦାରେ ନାକ ମାରିଲେ, ତୋର ଭବିଷ୍ୟତ ବୋଲି କିଛି ଆଉ ରହିବ ନାହିଁ।' ସେତେବେଳେ ମା'କୁ ମୁଁ ଡ଼ରୁଆ, ପୁରୁଣାକାଳିଆ ବୋଲି ଧରି ନେଇଥିଲି। ତା କଥା କେବେ ଶୁଣିନଥିଲି। ଏହାଦ୍ୱାରା କି ଭୁଲ କଲି, ଏବେ ବୁଝିପାରୁଛି। ଏଇ ଅସମ୍ଭବ ଚନ୍ଦ୍ର ଅଭିଯାନ କାର୍ଯ୍ୟରେ ଯୋଗ ଦେଇ ସେହିପରି ଭୁଲ କରିଛି। ଫଳରେ ମୋ ଜୀବନ ଏ ମହାଶୂନ୍ୟରେ ହରାଇବି।'' ଏପରି କହିବା ସହ, ମାଛର ହୃଦୟ ଭାଙ୍ଗି ପଡିଥିଲା।

ଠେକୁଆ ଯାନମଧ୍ୟସ୍ଥ ଝରକା ଦେଇ, ମହାଶୂନ୍ୟକୁ ଏକ ଧ୍ୟାନରେ ଚାହିଁ ବସିଥିଲା। କାଉ ଓ ମାଛର କଥା ଶୁଣି କହିଲା ''ବୃଥାରେ କାହିଁକି ତୁମେ ପଶ୍ଚାତାପ କରୁଛ? ଏହାଦ୍ୱାରା କୌଣସି ଲାଭ ନାହିଁ। ଅତୀତ ମୃତ ସଦୃଶ। ତାହା ଚିନ୍ତା କରିବା ବୃଥା। ବର୍ତ୍ତମାନ କଥା ଚିନ୍ତାକର। ଆମ୍ଭମାନଙ୍କର ଭବିଷ୍ୟତ ଆଉ ଅଛି କି ନାହିଁ?''

''ଏପରି ବିପଦ ସମୟରେ ସାହାଯ୍ୟ ପାଇବା ପର୍ଯ୍ୟନ୍ତ ବେକାର ବସିରହି ବିଭିନ୍ନ ଦୁଃଶ୍ଚିନ୍ତାରେ

ସମୟ ଅତିବାହିତ କରିବା ଅପେକ୍ଷା ବରଂ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ତନ୍ମଧ୍ୟସ୍ଥ ଗ୍ରହ ନକ୍ଷତ୍ର ଗୁଡିକ ବିଷୟରେ ଆଲୋଚ଼ନା କରି ସମୟ କଟାଇବା ଅଧିକ ବାଞ୍ଛନୀୟ ବୋଲି ମୁଁ ଭାବୁଛି। ତୁମ୍ଭମାନଙ୍କର ମତ କଣ ?'' ପେଚାମହାଶୟ ପଚାରିଲେ।

କାଉ ମାଛ ଓ ଠେକୁଆ ପେଚାମହାଶୟଙ୍କ ସହ ଏକମତ ହୋଇ ତାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ବିଷୟରେ କହିବାକୁ ଅନୁରୋଧ କଲେ।

''ଠିକ୍ ଅଛି। ମୁଁ ତୁମ୍ଭମାନଙ୍କୁ ପ୍ରଥମେ ଆମ ସୌର ଜଗତ ଓ ପରେ ବିଶ୍ୱଜଗତରେ ଗ୍ରହ ନକ୍ଷତ୍ର ମାନଙ୍କର ସୃଷ୍ଟି ବିଷୟରେ କହିବି ଶୁଣ'', ପେଚାମହାଶୟ ଆରମ୍ଭ କଲେ। ''ଆମ୍ଭମାନଙ୍କର ଏ ସୂର୍ଯ୍ୟର ଚତୁର୍ଦ୍ଦିଗରେ ୯'ଟି ଗ୍ରହ ଓ ସେ ଗ୍ରହ ଗୁଡିକର ଉପଗ୍ରହ ସହ କେତେଗୁଡିଏ ଉଲ୍‌କା, ଧୂମକେତୁ ଓ ଗ୍ରହାଂଶ ମଧ ପରିକ୍ରମଣ କରି ଚାଲିଛନ୍ତି। ସୂର୍ଯ୍ୟଙ୍କ ନିକଟସ୍ଥ ଗ୍ରହରୁ ଆରମ୍ଭ କରି କ୍ରମାନ୍ୱୟରେ ୯'ଟି ଗ୍ରହର ନାମ ହେଲା ମରକ୍ୟୁରୀ (ବୁଧ), ଭେନସ୍ (ଶୁକ୍ର), ଆର୍ଥ (ପୃଥିବୀ), ମାର୍ସ(ମଙ୍ଗଳ), ଜୁପିଟର (ବୃହସ୍ପତି), ସାଟର୍ଣ୍ଣ (ଶନି), ଇଉରେନ୍‌ସ, ନେପଚ୍ୟୁନ୍ ଓ ପ୍ଲୁଟୋ। ଏହି ଗ୍ରହଗୁଡିକର ଚତୁର୍ଦ୍ଦିଗରେ ସେମାନଙ୍କର ଉପଗ୍ରହ ଗୁଡିକ ଘୂରି ବୁଲୁଛନ୍ତି। ସୂର୍ଯ୍ୟଙ୍କ ନିକଟତମ ମରକ୍ୟୁରୀ ଓ ଭେନସ୍ ଗ୍ରହ ଦ୍ୱୟର ଉପଗ୍ରହ ନାହିଁ। ପୃଥିବୀର ଉପଗ୍ରହ ଚନ୍ଦ୍ର। ମାର୍ସର ଦୁଇଟି ଉପଗ୍ରହ ଯଥା ପୋବସ୍ ଓ ଡିମସ୍। ଜୁପିଟରର ୧୬ଟି ଉପଗ୍ରହ ଅଛି। ସେଗୁଡିକ ମଧ୍ୟରେ କାଲିସୋ, ଆଇୟୋ, ଇଉରୋପା ଓ ଆମାଥିଆ ପ୍ରସିଦ୍ଧ। ସାଟର୍ଣ୍ଣର ୨୨ଟି ଉପଗ୍ରହ ଅଛି। ସେଗୁଡିକ ମଧ୍ୟରେ ଜାନସ୍, ମିସସ୍, ଏନ୍‌ସିଲାଡିସ୍, ଟେଥସ୍ ଓ ଡାଇନେ ଉଲ୍ଲେଖଯୋଗ୍ୟ। ''ଇଉରେନ୍‌ସର ୫ଟି ଉପଗ୍ରହ ଅଛି। ଯଥା- ମିରାଣ୍ଡା, ଏରିଏଲ୍, ଅମ୍ବ୍ରିଏଲ୍ ଓ ଇଟାନିଆ ଇତ୍ୟାଦି। ନେପଚ୍ୟୁନ ଗ୍ରହର ଦୁଇଟି ଉପଗ୍ରହ ଅଛି-- ଟ୍ରିଟନ୍ ଓ ନିରେଡ୍। ଆମ ସୌର ଜଗତର ଶେଷ ଗ୍ରହ ପ୍ଲୁଟୋର ଏକମାତ୍ର ଉପଗ୍ରହ ଅଛି। ତାର ନାମ ସେରନ୍। ଏସବୁ ଉପଗ୍ରହ ଗୁଡିକର ଆକାର ଓ ଉପାଦାନ ଭିନ୍ନ ଭିନ୍ନ।

''ଆମର ଏ ସୂର୍ଯ୍ୟ ପରିବାରଟି ଛାୟାପଥ ତାରାପୁଞ୍ଜର (Milkyway Galaxy) ଅନ୍ତର୍ଭୁକ୍ତ। ବୈଜ୍ଞାନିକମାନଙ୍କ ମତରେ ଆମ ସୂର୍ଯ୍ୟଙ୍କ ଭଳି ବହୁ ସଂଖ୍ୟକ ସୂର୍ଯ୍ୟ ପ୍ରାୟ ୨୦ ହଜାର କୋଟି ସୂର୍ଯ୍ୟ, ଏହି ଛାୟାପଥର ଅଧିବାସୀ। ଏହି ଛାୟାପଥର ଆକୃତି କୁଣ୍ଡଳାକାର, କିମ୍ୱା ଗୁଡାଇ ହୋଇ ରହିଥିବା ତେଲଗୁଣୀ ପୋକ ଭଳି। ଏହାର ଆକାର ବିରାଟ। ଯଦି କେହି ଏହି ଛାୟାପଥର ଏକ ପାଖରୁ ଅନ୍ୟ ପାଖକୁ ଯିବାକୁ ଇଛା କରି ଆଲୋକର ବେଗରେ (ଆଲୋକର ଗତି ସେକେଣ୍ଡକୁ ୮୫୦୦୦ ମାଇଲ୍ ବା ୩୦୦,୦୦୦ କିଲୋମିଟର) ଯାତ୍ରା କରିବ, ତେବେ ତାକୁ ୧,୦୦,୦୦୦ ଆଲୋକ ବର୍ଷ ଲାଗିବ।''

''ଯଦି ଏହି ମହାବିଶ୍ୱକୁ ପୃଥିବୀ ସହିତ ତୁଳନା କରାଯାଏ ତେବେ ଦେଖିବ ଯେ, ପୃଥିବୀ ମଧ୍ୟରେ ମହାଦେଶ ଓ ତାହା ମଧ୍ୟରେ ଦେଶ ରହିଛି। ଦେଶ ମଧ୍ୟରେ ଜିଲ୍ଲା, ଜିଲ୍ଲା ମଧ୍ୟରେ, ସହର କିମ୍ୱା ଗ୍ରାମ ଓ ତା ମଧ୍ୟରେ ପରିବାର ବାସ କରନ୍ତି। ସେହିପରି ଏହି ସୂର୍ଯ୍ୟ ପରିବାର, ନଅଟି ଗ୍ରହ ଓ ଉପଗ୍ରହ ସହ ଛାୟାପଥରୂପୀ ସହରର ଅଧିବାସୀ। ସହର ଜିଲ୍ଲାର ଅନ୍ତର୍ଭୁକ୍ତ ହେବା ପରି, ଏ ଛାୟାପଥ ସହରଟି ଆଞ୍ଚଳିକ ତାରାପୁଞ୍ଜ (Local Cluster) ରୂପୀ ଜିଲ୍ଲାର ଅନ୍ତର୍ଭୁକ୍ତ। ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲାରେ, ଆମ ଛାୟାପଥ ସହର ଭଳି ଅନେକ

ଗୁଡିଏ ପ୍ରାୟ ୨୦ଟି ତାରାପୁଞ୍ଜ (Galaxy) ବା ସହର ବିଦ୍ୟମାନ। ଏହି ତାରାପୁଞ୍ଜ କିମ୍ବା ସହର ଗୁଡିକ ମଧ୍ୟରେ ସର୍ବ ବୃହତ୍ତମ ତାରାପୁଞ୍ଜର ନାମ ହେଲା ଆଣ୍ଡ୍ରୋମିଡା (Andromeda) ଓ ୨ୟ ବୃହତ୍ତମ ସହର ହେଲା ଆମ ଛାୟାପଥ। ଏହାଛଡା, ବୃହତ୍ ମାଗ୍ଲାନିକ୍ କ୍ଲାଉଡ୍ (Large Magglanic Cloud) ତାରାପୁଞ୍ଜ, କ୍ଷୁଦ୍ର ମାଗଲାନିକ୍ କ୍ଲାଉଡ୍ (Small Magglanic Cloud) ତାରାପୁଞ୍ଜ ଓ ସାତଟି ବାମନ ତାରାପୁଞ୍ଜ (Dwarf Galaxy) ଛଡ଼ା ଅନ୍ୟ କେତୋଟି ତାରାପୁଞ୍ଜ (Galaxy) ଏହି ଆଞ୍ଚଳିକ ତାରାପୁଞ୍ଜ (Local cluster) ମଧ୍ୟରେ ଗଣାଯାଏ। ପୁନଶ୍ଚ ଜିଲ୍ଲା ଦେଶର ଅନ୍ତର୍ଭୁକ୍ତ ହୋଇଥିବା ଭଳି ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲା, ମହାବିଶ୍ୱସ୍ଥ ତାରାପୁଞ୍ଜ ମଣ୍ଡଳୀର (Galaxy Clusters) ଅନ୍ତର୍ଭୁକ୍ତ। ଦେଶ ମହାଦେଶର ଅନ୍ତର୍ଭୁକ୍ତ ହେଲା ଭଳି ଏହି ତାରାପୁଞ୍ଜ ମଣ୍ଡଳୀ (Galaxy Clusters) ମହାତାରାପୁଞ୍ଜ ମଣ୍ଡଳୀର (Super cluster) ଏକ ଅଂଶ। ଏ ମହାବିଶ୍ୱରେ ଅଗଣିତ ତାରାପୁଞ୍ଜମଣ୍ଡଳୀ ବିଦ୍ୟମାନ। ବର୍ତ୍ତମାନ ତୁମ୍ଭମାନଙ୍କୁ ମୁଁ ଏ ବିଶ୍ୱ ସୃଷ୍ଟି ବିଷୟରେ ବୈଜ୍ଞାନିକଙ୍କ ତଥ୍ୟ (theory) ଓ ସେମାନଙ୍କର ମତଗୁଡିକ କହୁଛି ଶୁଣ। ଏ ମହାବିଶ୍ୱ ସୃଷ୍ଟି ଉପରେ, ବୈଜ୍ଞାନିକ ମାନଙ୍କର ଦୁଇଟି ମତ ରହିଛି। ପ୍ରଥମଟି ହେଲା ଚିରନ୍ତନ ସୃଷ୍ଟି (Steady State) ଓ ଦ୍ୱିତୀୟଟି ହେଲା ମହାବିସ୍ଫୋରଣ (Big Bang) ସୃଷ୍ଟି। ପ୍ରଥମ ମତ ବା ଚିରନ୍ତନ ସୃଷ୍ଟି (Steady State) ଅନୁଯାୟୀ, ଏ ମହାବିଶ୍ୱ ଓ ତନ୍ମଧ୍ୟସ୍ଥ ଘୂର୍ଣ୍ଣନଶୀଳ ଅଗଣିତ ଗ୍ରହ ଓ ନକ୍ଷତ୍ରମାଳା, କୋଟି କଳ୍ପାନ୍ତ ଯୁଗରୁ ରହି ଆସିଛି ଓ ସେପରି ଅନନ୍ତ କାଳଯାଏ ରହିଥିବ।

ଏହାର ଦ୍ୱିତୀୟ ମତ (Big Bang) ଅନୁଯାୟୀ, ହଜାର କୋଟି (୧୦,୦୦୦,୦୦୦,୦୦୦) ବର୍ଷ (10 Billion years) ତଳେ, ସମଗ୍ର ବିଶ୍ୱର ସମସ୍ତ ବସ୍ତୁ (Matter), ଶକ୍ତି (Energy) ଆକାରରେ ଏକ ବିନ୍ଦୁ (Geometric Point or Primodial Ball) ମଧ୍ୟରେ ଗଚ୍ଛିତ ହୋଇ ରହିଥିଲା। ଏହି ବିନ୍ଦୁ (Geometric Point) ମଧ୍ୟରେ ଉତ୍ତାପ ବୃଦ୍ଧି ହୋଇ ଅମାପ (Infinite) ହୋଇ ଉଠିବା ସହ ସେହି ସ୍ଥାନରେ ଏକ ପ୍ରଚଣ୍ଡ ବିସ୍ଫୋରଣ ହୋଇ ସୃଷ୍ଟିର ସୂତ୍ରପାତ କରିଥିଲା। ଏହି ମତଟି (Big Bang Theory) ସଠିକ୍ ମତ ରୂପେ ପୃଥିବୀର ଅଧିକାଂଶ ବୈଜ୍ଞାନିକଙ୍କ ଦ୍ୱାରା ଆଦୃତ ହୋଇଛି। କାରଣ ଏ ମତଟି କେତେକାଂଶରେ ବିଜ୍ଞାନ ଦ୍ୱାରା ପ୍ରମାଣିତ ହୋଇ ପାରିଛି।'' ପେଚାମହାଶୟ ବୁଝାଇ କହୁଥିବା ସମୟରେ, ମାଛକୁ ନିଦ ଲାଗି ଯାଇଥିଲା।



ସମୟ ଅତିବାହିତ କରିବା ଅପେକ୍ଷା ବରଂ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ତନ୍ମଧ୍ୟସ୍ଥ ଗ୍ରହ ନକ୍ଷତ୍ର ଗୁଡ଼ିକ ବିଷୟରେ ଆଲୋଚନା କରି ସମୟ କଟାଇବା ଅଧିକ ବାଞ୍ଛନୀୟ ବୋଲି ମୁଁ ଭାବୁଛି। ତୁମ୍ଭମାନଙ୍କର ମତ କଣ ?'' ପେଚାମହାଶୟ ପଚାରିଲେ।

କାଉ ମାଛ ଓ ଠେକୁଆ ପେଚାମହାଶୟଙ୍କ ସହ ଏକମତ ହୋଇ ତାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ବିଷୟରେ କହିବାକୁ ଅନୁରୋଧ କଲେ।

''ଠିକ୍ ଅଛି। ମୁଁ ତୁମ୍ଭମାନଙ୍କୁ ପ୍ରଥମେ ଆମ ସୌର ଜଗତ ଓ ପରେ ବିଶ୍ୱଜଗତରେ ଗ୍ରହ ନକ୍ଷତ୍ର ମାନଙ୍କର ସୃଷ୍ଟି ବିଷୟରେ କହିବି ଶୁଣ'', ପେଚାମହାଶୟ ଆରମ୍ଭ କଲେ। ''ଆମ୍ଭମାନଙ୍କର ଏ ସୂର୍ଯ୍ୟର ଚତୁର୍ଦ୍ଦିଗରେ ନ'ଟି ଗ୍ରହ ଓ ସେ ଗ୍ରହ ଗୁଡ଼ିକର ଉପଗ୍ରହ ସହ କେତେଗୁଡ଼ିଏ ଉଲ୍‌କା, ଧୂମକେତୁ ଓ ଗ୍ରହାଂଶ ମଧ୍ୟ ପରିକ୍ରମଣ କରି ଚାଲିଛନ୍ତି। ସୂର୍ଯ୍ୟଙ୍କ ନିକଟସ୍ଥ ଗ୍ରହରୁ ଆରମ୍ଭ କରି କ୍ରମାନ୍ୱୟରେ ନ'ଟି ଗ୍ରହର ନାମ ହେଲା ମରକ୍ୟୁରୀ (ବୁଧ), ଭେନସ୍ (ଶୁକ୍ର), ଆର୍ଥ (ପୃଥିବୀ), ମାର୍ସ(ମଙ୍ଗଳ), ଜୁପିଟର (ବୃହସ୍ପତି), ସାଟର୍ଣ୍ଣ (ଶନି), ଇଉରେନ୍‌ସ, ନେପଚ୍ୟୁନ୍ ଓ ପ୍ଲୁଟୋ। ଏହି ଗ୍ରହଗୁଡ଼ିକର ଚତୁର୍ଦ୍ଦିଗରେ ସେମାନଙ୍କର ଉପଗ୍ରହ ଗୁଡ଼ିକ ଘୂରି ବୁଲୁଛନ୍ତି। ସୂର୍ଯ୍ୟଙ୍କ ନିକଟତମ ମରକ୍ୟୁରୀ ଓ ଭେନସ୍ ଗ୍ରହ ଦ୍ୱୟର ଉପଗ୍ରହ ନାହିଁ। ପୃଥିବୀର ଉପଗ୍ରହ ଚନ୍ଦ୍ର। ମାର୍ସର ଦୁଇଟି ଉପଗ୍ରହ ଯଥା ଫୋବସ୍ ଓ ଡିମସ୍। ଜୁପିଟରର ୧୬ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ କାଲିସୋ, ଆଇୟୋ, ଇଉରୋପା ଓ ଆମାଥିଆ ପ୍ରସିଦ୍ଧ। ସାଟର୍ଣ୍ଣର ୨୨ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ ଟାଇଟାନ୍, ମିସସ୍, ଏନ୍‌ସିଲାଡିସ୍, ଟେଥସ୍ ଓ ଡାଇନେ ଉଲ୍ଲେଖଯୋଗ୍ୟ। ''ଇଉରେନ୍‌ସର ୫ଟି ଉପଗ୍ରହ ଅଛି। ଯଥା- ମିରାଣ୍ଡା, ଏରିଏଲ୍, ଅମ୍ବ୍ରିଏଲ୍ ଓ ଇଟାନିଆ ଇତ୍ୟାଦି। ନେପଚ୍ୟୁନ ଗ୍ରହର ଦୁଇଟି ଉପଗ୍ରହ ଅଛି -- ଟ୍ରିଟନ୍ ଓ ନିରେଡ୍। ଆମ ସୌର ଜଗତର ଶେଷ ଗ୍ରହ ପ୍ଲୁଟୋର ଏକମାତ୍ର ଉପଗ୍ରହ ଅଛି। ତାର ନାମ ସେରନ୍। ଏସବୁ ଉପଗ୍ରହ ଗୁଡ଼ିକର ଆକାର ଓ ଉପାଦାନ ଭିନ୍ନ ଭିନ୍ନ।

''ଆମର ଏ ସୂର୍ଯ୍ୟ ପରିବାରଟି ଛାୟାପଥ ତାରାପୁଞ୍ଜର (Milkyway Galaxy) ଅନ୍ତର୍ଭୁକ୍ତ। ବୈଜ୍ଞାନିକମାନଙ୍କ ମତରେ ଆମ ସୂର୍ଯ୍ୟଙ୍କ ଭଳି ବହୁ ସଂଖ୍ୟକ ସୂର୍ଯ୍ୟ ପ୍ରାୟ ୨୦ ହଜାର କୋଟି ସୂର୍ଯ୍ୟ, ଏହି ଛାୟାପଥର ଅଧିବାସୀ। ଏହି ଛାୟାପଥର ଆକୃତି କୁଣ୍ଡଳାକାର, କିମ୍ବା ଗୁଡ଼ାଇ ହୋଇ ରହିଥିବା ତେଲଗୁଣୀ ପୋକ ଭଳି। ଏହାର ଆକାର ବିରାଟ। ଯଦି କେହି ଏହି ଛାୟାପଥର ଏକ ପାଖରୁ ଅନ୍ୟ ପାଖକୁ ଯିବାକୁ ଇଚ୍ଛା କରି ଆଲୋକର ବେଗରେ (ଆଲୋକର ଗତି ସେକେଣ୍ଡକୁ ୮୫୦୦୦ ମାଇଲ୍ ବା ୩୦୦,୦୦୦ କିଲୋମିଟର) ଯାତ୍ରା କରିବ, ତେବେ ତାକୁ ୧,୦୦,୦୦୦ ଆଲୋକ ବର୍ଷ ଲାଗିବ।''

''ଯଦି ଏହି ମହାବିଶ୍ୱକୁ ପୃଥିବୀ ସହିତ ତୁଳନା କରାଯାଏ ତେବେ ଦେଖିବ ଯେ, ପୃଥିବୀ ମଧ୍ୟରେ ମହାଦେଶ ଓ ତାହା ମଧ୍ୟରେ ଦେଶ ରହିଛି। ଦେଶ ମଧ୍ୟରେ ଜିଲ୍ଲା, ଜିଲ୍ଲା ମଧ୍ୟରେ ସହର କିମ୍ବା ଗ୍ରାମ ଓ ତା ମଧ୍ୟରେ ପରିବାର ବାସ କରନ୍ତି। ସେହିପରି ଏହି ସୂର୍ଯ୍ୟ ପରିବାର, ନଅଟି ଗ୍ରହ ଓ ଉପଗ୍ରହ ସହ ଛାୟାପଥରୂପୀ ସହରର ଅଧିବାସୀ। ସହର ଜିଲ୍ଲାର ଅନ୍ତର୍ଭୁକ୍ତ ହେବା ପରି, ଏ ଛାୟାପଥ ସହରଟି ଆଞ୍ଚଳିକ ତାରାପୁଞ୍ଜ (Local Cluster) ରୂପୀ ଜିଲ୍ଲାର ଅନ୍ତର୍ଭୁକ୍ତ। ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲାରେ, ଆମ ଛାୟାପଥ ସହର ଭଳି ଅନେକ

ଗୁଡ଼ିଏ ପ୍ରାୟ ୨୦ଟି ତାରାପୁଞ୍ଜ (Galaxy) ବା ସହର ବିଦ୍ୟମାନ। ଏହି ତାରାପୁଞ୍ଜ କିମ୍ବା ସହର ଗୁଡ଼ିକ ମଧ୍ୟରେ ସର୍ବ ବୃହତ୍ତମ ତାରାପୁଞ୍ଜର ନାମ ହେଲା ଆଣ୍ଡ୍ରୋମିଡ଼ା (Andromeda) ଓ ୨ୟ ବୃହତ୍ତମ ସହର ହେଲା ଆମ ଛାୟାପଥ। ଏହାଛଡ଼ା, ବୃହତ୍ ମାଗ୍‌ଲାନିକ୍ କ୍ଲାଉଡ୍ (Large Magglanic Cloud) ତାରାପୁଞ୍ଜ, କ୍ଷୁଦ୍ର ମାଗଲାନିକ୍ କ୍ଲାଉଡ୍ (Small Magglanic Cloud) ତାରାପୁଞ୍ଜ ଓ ସାତଟି ବାମନ ତାରାପୁଞ୍ଜ (Dwarf Galaxy) ଛଡ଼ା ଅନ୍ୟ କେତୋଟି ତାରାପୁଞ୍ଜ (Galaxy) ଏହି ଆଞ୍ଚଳିକ ତାରାପୁଞ୍ଜ (Local cluster) ମଧ୍ୟରେ ଗଣାଯାଏ। ପୁନଶ୍ଚ ଜିଲ୍ଲା ଦେଶର ଅନ୍ତର୍ଭୁକ୍ତ ହୋଇଥିବା ଭଳି ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲା, ମହାବିଶ୍ୱସ୍ଥ ତାରାପୁଞ୍ଜ ମଣ୍ଡଳୀର (Galaxy Clusters) ଅନ୍ତର୍ଭୁକ୍ତ। ଦେଶ ମହାଦେଶର ଅନ୍ତର୍ଭୁକ୍ତ ହେଲା ଭଳି ଏହି ତାରାପୁଞ୍ଜ ମଣ୍ଡଳୀ (Galaxy Clusters) ମହାତାରାପୁଞ୍ଜ ମଣ୍ଡଳୀର (Super cluster) ଏକ ଅଂଶ। ଏ ମହାବିଶ୍ୱରେ ଅଗଣିତ ତାରାପୁଞ୍ଜମଣ୍ଡଳୀ ବିଦ୍ୟମାନ। ବର୍ତ୍ତମାନ ତୁମମାନଙ୍କୁ ମୁଁ ଏ ବିଶ୍ୱ ସୃଷ୍ଟି ବିଷୟରେ ବୈଜ୍ଞାନିକଙ୍କ ତଥ୍ୟ (theory) ଓ ସେମାନଙ୍କର ମତଗୁଡ଼ିକ କହୁଛି ଶୁଣ। ଏ ମହାବିଶ୍ୱ ସୃଷ୍ଟି ଉପରେ, ବୈଜ୍ଞାନିକ ମାନଙ୍କର ଦୁଇଟି ମତ ରହିଛି। ପ୍ରଥମଟି ହେଲା ଚିରନ୍ତନ ସୃଷ୍ଟି (Steady State) ଓ ଦ୍ୱିତୀୟଟି ହେଲା ମହାବିସ୍ଫୋରଣ (Big Bang) ସୃଷ୍ଟି। ପ୍ରଥମ ମତ ବା ଚିରନ୍ତନ ସୃଷ୍ଟି (Steady State) ଅନୁଯାୟୀ, ଏ ମହାବିଶ୍ୱ ଓ ତନ୍ମଧ୍ୟସ୍ଥ ଘୂର୍ଣ୍ଣନଶୀଳ ଅଗଣିତ ଗ୍ରହ ଓ ନକ୍ଷତ୍ରମାଳା, କୋଟି କଳ୍ପାନ୍ତ ଯୁଗରୁ ରହି ଆସିଛି ଓ ସେପରି ଅନନ୍ତ କାଳଯାଏ ରହିଥିବ।

ଏହାର ଦ୍ୱିତୀୟ ମତ (Big Bang) ଅନୁଯାୟୀ, ହଜାର କୋଟି (୧୦,୦୦୦,୦୦୦,୦୦୦) ବର୍ଷ (10 Billion years) ତଳେ, ସମଗ୍ର ବିଶ୍ୱର ସମସ୍ତ ବସ୍ତୁ (Matter), ଶକ୍ତି (Energy) ଆକାରରେ ଏକ ବିନ୍ଦୁ (Geometric Point or Primodial Ball) ମଧ୍ୟରେ ଗଚ୍ଛିତ ହୋଇ ରହିଥିଲା। ଏହି ବିନ୍ଦୁ (Geometric Point) ମଧ୍ୟରେ ଉତ୍ତାପ ବୃଦ୍ଧି ହୋଇ ଅମାପ (Infinite) ହୋଇ ଉଠିବା ସହ ସେହି ସ୍ଥାନରେ ଏକ ପ୍ରଚଣ୍ଡ ବିସ୍ଫୋରଣ ହୋଇ ସୃଷ୍ଟିର ସୂତ୍ରପାତ କରିଥିଲା। ଏହି ମତଟି (Big Bang Theory) ସଠିକ୍ ମତ ରୂପେ ପୃଥିବୀର ଅଧିକାଂଶ ବୈଜ୍ଞାନିକଙ୍କ ଦ୍ୱାରା ଆଦୃତ ହୋଇଛି। କାରଣ ଏ ମତଟି କେତେକାଂଶରେ ବିଜ୍ଞାନ ଦ୍ୱାରା ପ୍ରମାଣିତ ହୋଇ ପାରିଛି।'' ପେଚାମହାଶୟ ବୁଝାଇ କହୁଥିବା ସମୟରେ, ମାଛକୁ ନିଦ ଲାଗି ଯାଇଥିଲା।



ସମୟ ଅତିବାହିତ କରିବା ଅପେକ୍ଷା ବରଂ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ତନ୍ମଧ୍ୟସ୍ଥ ଗ୍ରହ ନକ୍ଷତ୍ର ଗୁଡ଼ିକ ବିଷୟରେ ଆଲୋଚନା କରି ସମୟ କଟାଇବା ଅଧିକ ବାଞ୍ଛନୀୟ ବୋଲି ମୁଁ ଭାବୁଛି। ତୁମ୍ଭମାନଙ୍କର ମତ କଣ ?'' ପେଚାମହାଶୟ ପଚାରିଲେ।

କାଉ ମାଛ ଓ ଠେକୁଆ ପେଚାମହାଶୟଙ୍କ ସହ ଏକମତ ହୋଇ ତାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ବିଷୟରେ କହିବାକୁ ଅନୁରୋଧ କଲେ।

''ଠିକ୍ ଅଛି। ମୁଁ ତୁମ୍ଭମାନଙ୍କୁ ପ୍ରଥମେ ଆମ ସୌର ଜଗତ ଓ ପରେ ବିଶ୍ୱଜଗତରେ ଗ୍ରହ ନକ୍ଷତ୍ର ମାନଙ୍କର ସୃଷ୍ଟି ବିଷୟରେ କହିବି ଶୁଣ'', ପେଚାମହାଶୟ ଆରମ୍ଭ କଲେ। ''ଆମ୍ଭମାନଙ୍କର ଏ ସୂର୍ଯ୍ୟର ଚତୁର୍ଦ୍ଦିଗରେ ନ'ଟି ଗ୍ରହ ଓ ସେ ଗ୍ରହ ଗୁଡ଼ିକର ଉପଗ୍ରହ ସହ କେତେଗୁଡ଼ିଏ ଉଲ୍କା, ଧୂମକେତୁ ଓ ଗ୍ରହାଂଶ ମଧ୍ୟ ପରିକ୍ରମଣ କରି ଚାଲିଛନ୍ତି। ସୂର୍ଯ୍ୟଙ୍କ ନିକଟସ୍ଥ ଗ୍ରହରୁ ଆରମ୍ଭ କରି କ୍ରମାନ୍ୱୟରେ ନ'ଟି ଗ୍ରହର ନାମ ହେଲା ମରକ୍ୟୁରୀ (ବୁଧ), ଭେନସ୍ (ଶୁକ୍ର), ଆର୍ଥ (ପୃଥିବୀ), ମାର୍ସ(ମଙ୍ଗଳ), ଜୁପିଟର (ବୃହସ୍ପତି), ସାଟର୍ଣ୍ଣ (ଶନି), ଇଉରେନ୍ସ, ନେପଚ୍ୟୁନ୍ ଓ ପ୍ଳୁଟୋ। ଏହି ଗ୍ରହଗୁଡ଼ିକର ଚତୁର୍ଦ୍ଦିଗରେ ସେମାନଙ୍କର ଉପଗ୍ରହ ଗୁଡ଼ିକ ଘୂରି ବୁଲୁଛନ୍ତି। ସୂର୍ଯ୍ୟଙ୍କ ନିକଟତମ ମରକ୍ୟୁରୀ ଓ ଭେନସ୍ ଗ୍ରହ ଦ୍ୱୟର ଉପଗ୍ରହ ନାହିଁ। ପୃଥିବୀର ଉପଗ୍ରହ ଚନ୍ଦ୍ର। ମାର୍ସର ଦୁଇଟି ଉପଗ୍ରହ ଯଥା ଫୋବସ୍ ଓ ଡିମସ୍। ଜୁପିଟରର ୧୬ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ କାଲିସୋ, ଆଇୟୋ, ଇଉରୋପା ଓ ଆମାଥିଆ ପ୍ରସିଦ୍ଧ। ସାଟର୍ଣ୍ଣର ୨୨ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ ଜାନସ୍, ମିସସ୍, ଏନ୍ସିଲାଡିସ୍, ଟେଥସ୍ ଓ ଡାଇନେ ଉଲ୍ଲେଖଯୋଗ୍ୟ। ''ଇଉରେନ୍ସର ୫ଟି ଉପଗ୍ରହ ଅଛି। ଯଥା- ମିରାଣ୍ଡା, ଏରିଏଲ୍, ଯ୍ମ୍ରିଏଲ୍ ଓ ଇଟାନିଆ ଇତ୍ୟାଦି। ନେପଚ୍ୟୁନ ଗ୍ରହର ଦୁଇଟି ଉପଗ୍ରହ ଅଛି -- ଟ୍ରିଟନ୍ ଓ ନିରେଡ୍। ଆମ ସୌର ଜଗତର ଶେଷ ଗ୍ରହ ପ୍ଳୁଟୋର ଏକମାତ୍ର ଉପଗ୍ରହ ଅଛି। ତାର ନାମ ସେରନ୍। ଏସବୁ ଉପଗ୍ରହ ଗୁଡ଼ିକର ଆକାର ଓ ଉପାଦାନ ଭିନ୍ନ ଭିନ୍ନ।

''ଆମର ଏ ସୂର୍ଯ୍ୟ ପରିବାରଟି ଛାୟାପଥ ତାରାପୁଞ୍ଜର (Milkyway Galaxy) ଅନ୍ତର୍ଭୁକ୍ତ। ବୈଜ୍ଞାନିକମାନଙ୍କ ମତରେ ଆମ ସୂର୍ଯ୍ୟଙ୍କ ଭଳି ବହୁ ସଂଖ୍ୟକ ସୂର୍ଯ୍ୟ ପ୍ରାୟ ୨୦ ହଜାର କୋଟି ସୂର୍ଯ୍ୟ, ଏହି ଛାୟାପଥର ଅଧିବାସୀ। ଏହି ଛାୟାପଥର ଆକୃତି କୁଣ୍ଡଳାକାର, କିମ୍ବା ଗୁଡ଼ାଇ ହୋଇ ରହିଥିବା ତେଲଗୁଣୀ ପୋକ ଭଳି। ଏହାର ଆକାର ବିରାଟ। ଯଦି କେହି ଏହି ଛାୟାପଥର ଏକ ପାଖରୁ ଅନ୍ୟ ପାଖକୁ ଯିବାକୁ ଇଚ୍ଛା କରି ଆଲୋକର ବେଗରେ (ଆଲୋକର ଗତି ସେକେଣ୍ଡକୁ ୮୫୦୦୦ ମାଇଲ୍ ବା ୩୦୦,୦୦୦ କିଲୋମିଟର) ଯାତ୍ରା କରିବ, ତେବେ ତାକୁ ୧,୦୦,୦୦୦ ଆଲୋକ ବର୍ଷ ଲାଗିବ।''

''ଯଦି ଏହି ମହାବିଶ୍ୱକୁ ପୃଥିବୀ ସହିତ ତୁଳନା କରାଯାଏ ତେବେ ଦେଖିବ ଯେ, ପୃଥିବୀ ମଧ୍ୟରେ ମହାଦେଶ ଓ ତାହା ମଧ୍ୟରେ ଦେଶ ରହିଛି। ଦେଶ ମଧ୍ୟରେ ଜିଲ୍ଲା, ଜିଲ୍ଲା ମଧ୍ୟରେ ସହର କିମ୍ବା ଗ୍ରାମ ଓ ତା ମଧ୍ୟରେ ପରିବାର ବାସ କରନ୍ତି। ସେହିପରି ଏହି ସୂର୍ଯ୍ୟ ପରିବାର, ନଅଟି ଗ୍ରହ ଓ ଉପଗ୍ରହ ସହ ଛାୟାପଥରୂପୀ ସହରର ଅଧିବାସୀ। ସହର ଜିଲ୍ଲାର ଅନ୍ତର୍ଭୁକ୍ତ ହେବା ପରି, ଏ ଛାୟାପଥ ସହରଟି ଆଞ୍ଚଳିକ ତାରାପୁଞ୍ଜ (Local Cluster) ରୂପୀ ଜିଲ୍ଲାର ଅନ୍ତର୍ଭୁକ୍ତ। ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲାରେ, ଆମ ଛାୟାପଥ ସହର ଭଳି ଅନେକ

ଗୁଡିଏ ପ୍ରାୟ ୨୦ଟି ତାରାପୁଞ୍ଜ (Galaxy) ବା ସହର ବିଦ୍ୟମାନ। ଏହି ତାରାପୁଞ୍ଜ କିମ୍ବା ସହର ଗୁଡିକ ମଧ୍ୟରେ ସର୍ବ ବୃହତ୍ତମ ତାରାପୁଞ୍ଜର ନାମ ହେଲା ଆଣ୍ଡ୍ରୋମିଡା (Andromeda) ଓ ୨ୟ ବୃହତ୍ତମ ସହର ହେଲା ଆମ ଛାୟାପଥ। ଏହାଛଡା, ବୃହତ୍ ମାଗ୍‌ଲାନିକ୍ କ୍ଲାଉଡ୍ (Large Magglanic Cloud) ତାରାପୁଞ୍ଜ, କ୍ଷୁଦ୍ର ମାଗଲାନିକ୍ କ୍ଲାଉଡ୍ (Small Magglanic Cloud) ତାରାପୁଞ୍ଜ ଓ ସାତଟି ବାମନ ତାରାପୁଞ୍ଜ (Dwarf Galaxy) ଛଡ଼ା ଅନ୍ୟ କେତୋଟି ତାରାପୁଞ୍ଜ (Galaxy) ଏହି ଆଞ୍ଚଳିକ ତାରାପୁଞ୍ଜ (Local cluster) ମଧ୍ୟରେ ଗଣାଯାଏ। ପୁନଶ୍ଚ ଜିଲ୍ଲା ଦେଶର ଅନ୍ତର୍ଭୁକ୍ତ ହୋଇଥିବା ଭଳି ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲା, ମହାବିଶ୍ୱସ୍ଥ ତାରାପୁଞ୍ଜ ମଣ୍ଡଳୀର (Galaxy Clusters) ଅନ୍ତର୍ଭୁକ୍ତ। ଦେଶ ମହାଦେଶର ଅନ୍ତର୍ଭୁକ୍ତ ହେଲା ଭଳି ଏହି ତାରାପୁଞ୍ଜ ମଣ୍ଡଳୀ (Galaxy Clusters) ମହାତାରାପୁଞ୍ଜ ମଣ୍ଡଳୀର (Super cluster) ଏକ ଅଂଶ। ଏ ମହାବିଶ୍ୱରେ ଅଗଣିତ ତାରାପୁଞ୍ଜମଣ୍ଡଳୀ ବିଦ୍ୟମାନ। ବର୍ତ୍ତମାନ ତୁମ୍ଭମାନଙ୍କୁ ମୁଁ ଏ ବିଶ୍ୱ ସୃଷ୍ଟି ବିଷୟରେ ବୈଜ୍ଞାନିକଙ୍କ ତଥ୍ୟ (theory) ଓ ସେମାନଙ୍କର ମତଗୁଡିକ କହୁଛି ଶୁଣ। ଏ ମହାବିଶ୍ୱ ସୃଷ୍ଟି ଉପରେ, ବୈଜ୍ଞାନିକ ମାନଙ୍କର ଦୁଇଟି ମତ ରହିଛି। ପ୍ରଥମଟି ହେଲା ଚିରନ୍ତନ ସୃଷ୍ଟି (Steady State) ଓ ଦ୍ୱିତୀୟଟି ହେଲା ମହାବିସ୍ଫୋରଣ (Big Bang) ସୃଷ୍ଟି। ପ୍ରଥମ ମତ ବା ଚିରନ୍ତନ ସୃଷ୍ଟି (Steady State) ଅନୁଯାୟୀ, ଏ ମହାବିଶ୍ୱ ଓ ତନ୍ମଧ୍ୟସ୍ଥ ଘୂର୍ଣ୍ଣନଶୀଳ ଅଗଣିତ ଗ୍ରହ ଓ ନକ୍ଷତ୍ରମାଳା, କୋଟି କଳ୍ପାନ୍ତ ଯୁଗରୁ ରହି ଆସିଛି ଓ ସେପରି ଅନନ୍ତ କାଳଯାଏ ରହିଥିବ।

ଏହାର ଦ୍ୱିତୀୟ ମତ (Big Bang) ଅନୁଯାୟୀ, ହଜାର କୋଟି (୧୦,୦୦୦,୦୦୦,୦୦୦) ବର୍ଷ (10 Billion years) ତଳେ, ସମଗ୍ର ବିଶ୍ୱର ସମସ୍ତ ବସ୍ତୁ (Matter), ଶକ୍ତି (Energy) ଆକାରରେ ଏକ ବିନ୍ଦୁ (Geometric Point or Primodial Ball) ମଧ୍ୟରେ ଗଚ୍ଛିତ ହୋଇ ରହିଥିଲା। ଏହି ବିନ୍ଦୁ (Geometric Point) ମଧ୍ୟରେ ଉତ୍ତାପ ବୃଦ୍ଧି ହୋଇ ଅମାପ (Infinite) ହୋଇ ଉଠିବା ସହ ସେହି ସ୍ଥାନରେ ଏକ ପ୍ରଚଣ୍ଡ ବିସ୍ଫୋରଣ ହୋଇ ସୃଷ୍ଟିର ସୂତ୍ରପାତ କରିଥିଲା। ଏହି ମତଟି (Big Bang Theory) ସଠିକ୍ ମତ ରୂପେ ପୃଥିବୀର ଅଧିକାଂଶ ବୈଜ୍ଞାନିକଙ୍କ ଦ୍ୱାରା ଆଦୃତ ହୋଇଛି। କାରଣ ଏ ମତଟି କେତେକାଂଶରେ ବିଜ୍ଞାନ ଦ୍ୱାରା ପ୍ରମାଣିତ ହୋଇ ପାରିଛି।'' ପେଚାମହାଶୟ ବୁଝାଇ କହୁଥିବା ସମୟରେ, ମାଛକୁ ନିଦ ଲାଗି ଯାଇଥିଲା।



ସମୟ ଅତିବାହିତ କରିବା ଅପେକ୍ଷା ବରଂ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି ଓ ତନ୍ମଧ୍ୟସ୍ଥ ଗ୍ରହ ନକ୍ଷତ୍ର ଗୁଡ଼ିକ ବିଷୟରେ ଆଲୋଚନା କରି ସମୟ କଟାଇବା ଅଧିକ ବାଞ୍ଛନୀୟ ବୋଲି ମୁଁ ଭାବୁଛି। ତୁମ୍ଭମାନଙ୍କର ମତ କଣ ?'' ପେଚାମହାଶୟ ପଚାରିଲେ।

କାଉ ମାଛ ଓ ଠେକୁଆ ପେଚାମହାଶୟଙ୍କ ସହ ଏକମତ ହୋଇ ତାଙ୍କୁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ବିଷୟରେ କହିବାକୁ ଅନୁରୋଧ କଲେ।

''ଠିକ୍ ଅଛି। ମୁଁ ତୁମ୍ଭମାନଙ୍କୁ ପ୍ରଥମେ ଆମ ସୌର ଜଗତ ଓ ପରେ ବିଶ୍ୱଜଗତରେ ଗ୍ରହ ନକ୍ଷତ୍ର ମାନଙ୍କର ସୃଷ୍ଟି ବିଷୟରେ କହିବି ଶୁଣ'', ପେଚାମହାଶୟ ଆରମ୍ଭ କଲେ। ''ଆମ୍ଭମାନଙ୍କର ଏ ସୂର୍ଯ୍ୟର ଚତୁର୍ଦ୍ଦିଗରେ ନ'ଟି ଗ୍ରହ ଓ ସେ ଗ୍ରହ ଗୁଡ଼ିକର ଉପଗ୍ରହ ସହ କେତେଗୁଡ଼ିଏ ଉଲ୍‌କା, ଧୂମକେତୁ ଓ ଗ୍ରହାଂଶ ମଧ୍ୟ ପରିକ୍ରମଣ କରି ଚାଲିଛନ୍ତି। ସୂର୍ଯ୍ୟଙ୍କ ନିକଟସ୍ଥ ଗ୍ରହରୁ ଆରମ୍ଭ କରି କ୍ରମାନ୍ୱୟରେ ନ'ଟି ଗ୍ରହର ନାମ ହେଲା ମରକ୍ୟୁରୀ (ବୁଧ), ଭେନସ୍ (ଶୁକ୍ର), ଆର୍ଥ (ପୃଥିବୀ), ମାର୍ସ(ମଙ୍ଗଳ), ଜୁପିଟର (ବୃହସ୍ପତି), ସାଟର୍ଣ୍ଣ (ଶନି), ଇଉରେନ୍‌ସ, ନେପଟ୍ୟୁନ୍ ଓ ପ୍ଲୁଟୋ। ଏହି ଗ୍ରହଗୁଡ଼ିକର ଚତୁର୍ଦ୍ଦିଗରେ ସେମାନଙ୍କର ଉପଗ୍ରହ ଗୁଡ଼ିକ ଘୂରି ବୁଲୁଛନ୍ତି। ସୂର୍ଯ୍ୟଙ୍କ ନିକଟତମ ମରକ୍ୟୁରୀ ଓ ଭେନସ୍ ଗ୍ରହ ଦ୍ୱୟର ଉପଗ୍ରହ ନାହିଁ। ପୃଥିବୀର ଉପଗ୍ରହ ଚନ୍ଦ୍ର। ମାର୍ସର ଦୁଇଟି ଉପଗ୍ରହ ଯଥା ଫୋବସ୍ ଓ ଡିମସ୍। ଜୁପିଟରର ୧୬ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ କାଲିସୋ, ଆଇଯୋ, ଇଉରୋପା ଓ ଆମାଥିଆ ପ୍ରସିଦ୍ଧ। ସାଟର୍ଣ୍ଣର ୨୨ଟି ଉପଗ୍ରହ ଅଛି। ସେଗୁଡ଼ିକ ମଧ୍ୟରେ ଜାନସ୍, ମିସସ୍, ଏନ୍‌ସିଲାଡିସ୍, ଟେଥସ୍ ଓ ଡାଇନେ ଉଲ୍ଲେଖଯୋଗ୍ୟ। ''ଇଉରେନ୍‌ସର ୫ଟି ଉପଗ୍ରହ ଅଛି। ଯଥା- ମିରାଣ୍ଡା, ଏରିଏଲ୍, ଅମ୍ବ୍ରିଏଲ୍ ଓ ଇଟାନିଆ ଇତ୍ୟାଦି। ନେପଟ୍ୟୁନ ଗ୍ରହର ଦୁଇଟି ଉପଗ୍ରହ ଅଛି -- ଟ୍ରିଟନ୍ ଓ ନିରେଡ୍। ଆମ ସୌର ଜଗତର ଶେଷ ଗ୍ରହ ପ୍ଲୁଟୋର ଏକମାତ୍ର ଉପଗ୍ରହ ଅଛି। ତାର ନାମ ସେରନ୍। ଏସବୁ ଉପଗ୍ରହ ଗୁଡ଼ିକର ଆକାର ଓ ଉପାଦାନ ଭିନ୍ନ ଭିନ୍ନ।

''ଆମର ଏ ସୂର୍ଯ୍ୟ ପରିବାରଟି ଛାୟାପଥ ତାରାପୁଞ୍ଜର (Milkyway Galaxy) ଅନ୍ତର୍ଭୁକ୍ତ। ବୈଜ୍ଞାନିକମାନଙ୍କ ମତରେ ଆମ ସୂର୍ଯ୍ୟଙ୍କ ଭଳି ବହୁ ସଂଖ୍ୟକ ସୂର୍ଯ୍ୟ ପ୍ରାୟ ୨୦ ହଜାର କୋଟି ସୂର୍ଯ୍ୟ, ଏହି ଛାୟାପଥର ଅଧିବାସୀ। ଏହି ଛାୟାପଥର ଆକୃତି କୁଣ୍ଡଳାକାର, କିମ୍ବା ଗୁଡ଼ାଇ ହୋଇ ରହିଥିବା ତେଲଗୁଣୀ ପୋକ ଭଳି। ଏହାର ଆକାର ବିରାଟ। ଯଦି କେହି ଏହି ଛାୟାପଥର ଏକ ପାଖରୁ ଅନ୍ୟ ପାଖକୁ ଯିବାକୁ ଇଚ୍ଛା କରି ଆଲୋକର ବେଗରେ (ଆଲୋକର ଗତି ସେକେଣ୍ଡକୁ ୮୫୦୦୦ ମାଇଲ୍ ବା ୩୦୦,୦୦୦ କିଲୋମିଟର) ଯାତ୍ରା କରିବ, ତେବେ ତାକୁ ୧,୦୦,୦୦୦ ଆଲୋକ ବର୍ଷ ଲାଗିବ।''

''ଯଦି ଏହି ମହାବିଶ୍ୱକୁ ପୃଥିବୀ ସହିତ ତୁଳନା କରାଯାଏ ତେବେ ଦେଖିବ ଯେ, ପୃଥିବୀ ମଧ୍ୟରେ ମହାଦେଶ ଓ ତାହା ମଧ୍ୟରେ ଦେଶ ରହିଛି। ଦେଶ ମଧ୍ୟରେ ଜିଲ୍ଲା, ଜିଲ୍ଲା ମଧ୍ୟରେ ସହର କିମ୍ବା ଗ୍ରାମ ଓ ତା ମଧ୍ୟରେ ପରିବାର ବାସ କରନ୍ତି। ସେହିପରି ଏହି ସୂର୍ଯ୍ୟ ପରିବାର, ନଅଟି ଗ୍ରହ ଓ ଉପଗ୍ରହ ସହ ଛାୟାପଥରୂପୀ ସହରର ଅଧିବାସୀ। ସହର ଜିଲ୍ଲାର ଅନ୍ତର୍ଭୁକ୍ତ ହେବା ପରି, ଏ ଛାୟାପଥ ସହରଟି ଆଞ୍ଚଳିକ ତାରାପୁଞ୍ଜ (Local Cluster) ରୂପୀ ଜିଲ୍ଲାର ଅନ୍ତର୍ଭୁକ୍ତ। ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲାରେ, ଆମ ଛାୟାପଥ ସହର ଭଳି ଅନେକ

ଗୁଡ଼ିଏ ପ୍ରାୟ ୨୦ଟି ତାରାପୁଞ୍ଜ (Galaxy) ବା ସହର ବିଦ୍ୟମାନ। ଏହି ତାରାପୁଞ୍ଜ କିମ୍ବା ସହର ଗୁଡିକ ମଧ୍ୟରେ ସର୍ବ ବୃହତ୍ତମ ତାରାପୁଞ୍ଜର ନାମ ହେଲା ଆଣ୍ଡ୍ରୋମିଡା (Andromeda) ଓ ୨ୟ ବୃହତ୍ତମ ସହର ହେଲା ଆମ ଛାୟାପଥ। ଏହାଛଡା, ବୃହତ୍ ମାଗ୍‌ଲାନିକ୍ କ୍ଲାଉଡ୍ (Large Magglanic Cloud) ତାରାପୁଞ୍ଜ, କ୍ଷୁଦ୍ର ମାଗଲାନିକ୍ କ୍ଲାଉଡ୍ (Small Magglanic Cloud) ତାରାପୁଞ୍ଜ ଓ ସାତଟି ବାମନ ତାରାପୁଞ୍ଜ (Dwarf Galaxy) ଛଡ଼ା ଅନ୍ୟ କେତୋଟି ତାରାପୁଞ୍ଜ (Galaxy) ଏହି ଆଞ୍ଚଳିକ ତାରାପୁଞ୍ଜ (Local cluster) ମଧ୍ୟରେ ଗଣାଯାଏ। ପୁନଶ୍ଚ ଜିଲ୍ଲା ଦେଶର ଅନ୍ତର୍ଭୁକ୍ତ ହୋଇଥିବା ଭଳି ଏହି ଆଞ୍ଚଳିକ ତାରାପୁଞ୍ଜ ରୂପୀ ଜିଲ୍ଲା, ମହାବିଶ୍ୱସ୍ଥ ତାରାପୁଞ୍ଜ ମଣ୍ଡଳୀର (Galaxy Clusters) ଅନ୍ତର୍ଭୁକ୍ତ। ଦେଶ ମହାଦେଶର ଅନ୍ତର୍ଭୁକ୍ତ ହେଲା ଭଳି ଏହି ତାରାପୁଞ୍ଜ ମଣ୍ଡଳୀ (Galaxy Clusters) ମହାତାରାପୁଞ୍ଜ ମଣ୍ଡଳୀର (Super cluster) ଏକ ଅଂଶ। ଏ ମହାବିଶ୍ୱରେ ଅଗଣିତ ତାରାପୁଞ୍ଜମଣ୍ଡଳୀ ବିଦ୍ୟମାନ। ବର୍ତ୍ତମାନ ତୁମ୍ଭମାନଙ୍କୁ ମୁଁ ଏ ବିଶ୍ୱ ସୃଷ୍ଟି ବିଷୟରେ ବୈଜ୍ଞାନିକଙ୍କ ତଥ୍ୟ (theory) ଓ ସେମାନଙ୍କର ମତଗୁଡିକ କହୁଛି ଶୁଣ। ଏ ମହାବିଶ୍ୱ ସୃଷ୍ଟି ଉପରେ, ବୈଜ୍ଞାନିକ ମାନଙ୍କର ଦୁଇଟି ମତ ରହିଛି। ପ୍ରଥମଟି ହେଲା ଚିରନ୍ତନ ସୃଷ୍ଟି (Steady State) ଓ ଦ୍ୱିତୀୟଟି ହେଲା ମହାବିସ୍ଫୋରଣ (Big Bang) ସୃଷ୍ଟି। ପ୍ରଥମ ମତ ବା ଚିରନ୍ତନ ସୃଷ୍ଟି (Steady State) ଅନୁଯାୟୀ, ଏ ମହାବିଶ୍ୱ ଓ ତନ୍ମଧ୍ୟସ୍ଥ ଘୂର୍ଣ୍ଣନଶୀଳ ଅଗଣିତ ଗ୍ରହ ଓ ନକ୍ଷତ୍ରମାଳା, କୋଟି କଳ୍ପାନ୍ତ ଯୁଗରୁ ରହି ଆସିଛି ଓ ସେପରି ଅନନ୍ତ କାଳଯାଏ ରହିଥିବ।

ଏହାର ଦ୍ୱିତୀୟ ମତ (Big Bang) ଅନୁଯାୟୀ, ହଜାର କୋଟି (୧୦,୦୦୦,୦୦୦,୦୦୦) ବର୍ଷ (10 Billion years) ତଳେ, ସମଗ୍ର ବିଶ୍ୱର ସମସ୍ତ ବସ୍ତୁ (Matter), ଶକ୍ତି (Energy) ଆକାରରେ ଏକ ବିନ୍ଦୁ (Geometric Point or Primodial Ball) ମଧ୍ୟରେ ଗଚ୍ଛିତ ହୋଇ ରହିଥିଲା। ଏହି ବିନ୍ଦୁ (Geometric Point) ମଧ୍ୟରେ ଉତ୍ତାପ ବୃଦ୍ଧି ହୋଇ ଅମାପ (Infinite) ହୋଇ ଉଠିବା ସହ ସେହି ସ୍ଥାନରେ ଏକ ପ୍ରଚଣ୍ଡ ବିସ୍ଫୋରଣ ହୋଇ ସୃଷ୍ଟିର ସୂତ୍ରପାତ କରିଥିଲା। ଏହି ମତଟି (Big Bang Theory) ସଠିକ୍ ମତ ରୂପେ ପୃଥିବୀର ଅଧିକାଂଶ ବୈଜ୍ଞାନିକଙ୍କ ଦ୍ୱାରା ଆଦୃତ ହୋଇଛି। କାରଣ ଏ ମତଟି କେତେକାଂଶରେ ବିଜ୍ଞାନ ଦ୍ୱାରା ପ୍ରମାଣିତ ହୋଇ ପାରିଛି।'' ପେଚାମହାଶୟ ବୁଝାଇ କହୁଥିବା ସମୟରେ, ମାଛକୁ ନିଦ ଲାଗି ଯାଇଥିଲା।



ଚନ୍ଦ୍ର ବିଜୟ ତ ସରିଲା
ସମସ୍ତେ ହେଲେ ଚନ୍ଦ୍ର ବିଜୟୀ

ମାତ୍ର ତାପରେ ?

ଆଉ କ'ଣ ଜୟ କରିବାକୁ ହେବ ?
ସମଗ୍ର ବିଶ୍ୱ ତ ପଡ଼ି ରହିଛି ।

ତେଣୁ ଅତିଶୀଘ୍ର ପ୍ରକାଶ କରୁଛୁ
ଗଳ୍ପ ମାଧ୍ୟମରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ

# ବିଶ୍ୱ ବିଜୟୀ

**ଲେଖିକା - ଗୀତା ପତି**
**ପ୍ରକାଶକ - ଲାର୍କ ବୁକ୍ସ**

---

ପିଲାଏ
ସଁବାଳୁଆ ଦେଖିଛ ?
ପ୍ରଜାପତି ଦେଖିଛ ନାଁ ନାହିଁ ?
ମାତ୍ର ସଁବାଳୁଆ ଜନ୍ମ ହେଲାପରେ ଯେ କିଛିଦିନ ଉତ୍ତାରେ ପ୍ରଜାପତିରେ ରୂପାନ୍ତରିତ ହୁଏ,
ତା ତୁମେ ଜାଣ କି ?

ଏ ସମ୍ବନ୍ଧରେ ବିଜ୍ଞାନ ସମ୍ବଳିତ ତଥ୍ୟ ଜାଣିବା ପାଇଁ ଏଇ ବହିଟିକୁ ପଢ଼ ।

# ପ୍ରଜାପତିର ସ୍ୱପ୍ନ

**ଲେଖିକା - ଗୀତା ପତି**
**ପ୍ରକାଶକ - ଲାର୍କ ବୁକ୍ସ**

ଚନ୍ଦ୍ର ବିଜୟ ତ ସରିଲା
ସମସ୍ତେ ହେଲେ ଚନ୍ଦ୍ର ବିଜୟୀ

ମାତ୍ର ତାପରେ ?

ଆଉ କ'ଣ ଜୟ କରିବାକୁ ହେବ ?
ସମଗ୍ର ବିଶ୍ୱ ତ ପଡ଼ି ରହିଛି ।

ତେଣୁ ଅତିଶୀଘ୍ର ପ୍ରକାଶ କରୁଛୁ
ଗଳ୍ପ ମାଧ୍ୟମରେ ବୈଜ୍ଞାନିକ ତଥ୍ୟ ସମ୍ବଳିତ

# ବିଶ୍ୱ ବିଜୟୀ

**ଲେଖିକା - ଗୀତା ପତି**
**ପ୍ରକାଶକ - ଲାର୍କ ବୁକ୍ସ**

---

ପିଲାଏ
ସାଁବାଳୁଆ ଦେଖିଛ ?
ପ୍ରଜାପତି ଦେଖିଛ ନାଁ ନାହିଁ ?
ମାତ୍ର ସାଁବାଳୁଆ ଜନ୍ମ ହେଲାପରେ ଯେ କିଛିଦିନ ଉତ୍ତାରେ ପ୍ରଜାପତିରେ ରୂପାନ୍ତରିତ ହୁଏ, ତା ତୁମେ ଜାଣ କି ?

ଏ ସମ୍ବନ୍ଧରେ ବିଜ୍ଞାନ ସମ୍ବଳିତ ତଥ୍ୟ ଜାଣିବା ପାଇଁ ଏଇ ବହିଟିକୁ ପଢ଼ ।

# ପ୍ରଜାପତିର ସ୍ୱପ୍ନ

**ଲେଖିକା - ଗୀତା ପତି**
**ପ୍ରକାଶକ - ଲାର୍କ ବୁକ୍ସ**

